# ଇଂ. ସାର୍ ବିଶ୍ୱେଶ୍ୱରାୟା



ଲେଖକ :
ଇଂ. ନରକାର ମହାଳିକ

# ଇଂ. ସାର୍ ବିଶ୍ୱେଶ୍ୱରାୟା

ଲେଖକ :
ଇଂ. ନିରାକାର ମହାଲିକ

ପ୍ରକାଶିକା :
ଶ୍ରୀମତୀ ସୁଷମା ମହାଲିକ
ଏନ୍-୧/୮୨, ନୂଆପଲ୍ଲୀ, ପୋ : ଆଇ. ଆର୍. ସି. ଭିଲେଜ୍
ଭୁବନେଶ୍ୱର - ୭୫୧ ୦୧୫, ଜିଲ୍ଲା - ଖୋର୍ଦ୍ଧା, ଫୋନ୍ - ୫୫୪୫୨୭ ।

ପ୍ରଥମ ପ୍ରକାଶ :
ଇଞ୍ଜିନିୟର୍ସ ଡେ.
ସେପ୍‌ଟେମ୍ବର-୧୫, ୨୦୦୦

ମୁଦ୍ରଣ :
ପ୍ରିୟଦର୍ଶୀ ପ୍ରକାଶନୀ
୬୩, ଫରେଷ୍ଟ ପାର୍କ, ଭୁବନେଶ୍ୱର - ୭୫୧ ୦୦୯

**ER. SIR VISVESVARAYA**

by
Er. Nirakar Mahalik

Published by :
Smt. Sushama Mahalik
N-1/82, Nayapalli, P.O. - I.R.C. Village,
Bhubaneswar - 751 015, Dist - Khurda
Phone : 554527

First Published :
Engineers' Day
September-15, 2000

Printed at :
Priyadarshi Prakashani
63, Forest Park, Bhubaneswar-751 009

---

Price : **Rs. 35.00** (Paper Pack)
**Rs. 40.00 (Board Bound)**

# ନିଜକଥା

ଇଂ ସାର୍ ବିଶ୍ୱେଶ୍ୱରୟାଙ୍କ ଜୀବନଗାଥା ଭାରତୀୟ ଜାତୀୟ ଜୀବନର ଏକ ଉଜ୍ଜ୍ୱଳ ଅଧ୍ୟାୟ । ପୂଜ୍ୟ ପୂଜାର ପ୍ରତୀକ ରୂପେ ତାଙ୍କର ଜନ୍ମ ଦିବସ ସେପ୍ଟେମ୍ବର ୧୫ ତାରିଖଟିକୁ ପ୍ରତିବର୍ଷ ଦେଶସାରା ପାଳନ କରାଯାଏ । ଏହି ଶୁଭ ଅବସରରେ ଇଂ ସାର୍ ବିଶ୍ୱେଶ୍ୱରୟା ଜୀବନୀ ପୁସ୍ତିକାଟି ଉନ୍ମୋଚିତ ହୋଇଥିବାରୁ ଏହା ମୋତେ ଗଭୀର ଆନନ୍ଦପ୍ରଦାନ କରିଅଛି ।

ସାର୍ ଡଃ ଏମ୍. ବିଶ୍ୱେଶ୍ୱରୟା କେବଳ ଜଣେ ଇଞ୍ଜିନିୟର ନଥିଲେ, ସେ ଥିଲେ ନବ ଭାରତର ଅନ୍ୟତମ ମୁଖ୍ୟ ନିର୍ମାତା । ଇଂରେଜ ଶାସନ ଅମଳରେ ବ୍ରିଟିଶ ଶାସକମାନେ ତାଙ୍କ କର୍ତ୍ତବ୍ୟ ନିଷ୍ଠା ଓ ବହୁଦର୍ଶିତାରେ ଉଦ୍‌ବୁଦ୍ଧ ହୋଇ ତାଙ୍କୁ 'ସାର୍' ଉପାଧିରେ ଭୂଷିତ କରିଥିଲେ । ଇଂଜିନିୟରିଂ ଇତିହାସରେ ତାଙ୍କପରି ଜଣେ ବିରଳ ପ୍ରତିଭାଯୁକ୍ତ ଉଚ୍ଚ ବୈଷୟିକ ଜ୍ଞାନ ସମ୍ପନ୍ନ ବ୍ୟକ୍ତି ପ୍ରଯୁକ୍ତି ବିଦ୍ୟାର ପାରମ୍ପରିକ ପରିସରକୁ ବ୍ୟାପକ ଗୁଣାତ୍ମକ କରିବା ଦିଗରେ ନୂତନ ଢଗ ଉନ୍ମୋଚନ କରିଛନ୍ତି । ଏହା କେବଳ ତାଙ୍କର ବୃତ୍ତିଗତ ଦକ୍ଷତା ପାଇଁ ନୁହେଁ ବରଂ ତାଙ୍କର ବ୍ୟକ୍ତିଗତ ସଦ୍‌ଗୁଣ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ପ୍ରଶାସନିକ ଦୂରଦୃଷ୍ଟି ଏବଂ ରାଷ୍ଟ୍ରୀୟ ଚିନ୍ତାଧାରା ପାଇଁ ସମ୍ଭବ ହୋଇଛି । ଭାରତ ସରକାର ତାଙ୍କୁ 'ଭାରତରତ୍ନ' ଉପାଧିରେ ସମ୍ମାନିତ କରିଛନ୍ତି । ତାଙ୍କର ଜନ୍ମ ଶତବାର୍ଷିକୀର ସ୍ମାରକୀ ସ୍ୱରୂପ ଏକ ସ୍ୱତନ୍ତ୍ର ଡାକ ଟିକେଟ ମଧ୍ୟ ପ୍ରଚଳନ କରାଯାଇଛି ।

ଜନ୍ମ ଶତବାର୍ଷିକୀରେ ଇନିଷ୍ଟିଚିଉଟ୍ ଅଫ୍ ଇଞ୍ଜିନିୟରସ୍ (ଇଣ୍ଡିଆ)ର ଓଡ଼ିଶା ଷ୍ଟେଟ୍ ସେଣ୍ଟର ତରଫରୁ "Life sketch of Sir M. Visvesvaraya" ଇଂରାଜୀରେ ପ୍ରକାଶିତ ହୋଇଥିଲା । ମୋର ଇଂ ସାର୍ ବିଶ୍ୱେଶ୍ୱରୟାଙ୍କ ଜୀବନୀ-ମୂଳକ ଓଡ଼ିଆ ପାଣ୍ଡୁଲିପିଟି ପ୍ରସ୍ତୁତ କରିବାରେ ତାହା ବିଶେଷ ସହାୟକ ହୋଇଛି ।

ସାର୍ ବିଶ୍ୱେଶ୍ୱରୟାଙ୍କ ଜୀବନୀ ଭି. ଏସ୍. ନାରାୟଣରାଓଙ୍କ ଦ୍ୱାରା ୧୯୭୩ରେ ପ୍ରକାଶିତ ହୋଇଥିଲା । ୧୯୭୮ରେ ଶ୍ରୀଯୁକ୍ତ ରାଓଙ୍କ ଦ୍ୱାରା କନ୍ନଡ଼ ଭାଷାରେ ପରିବର୍ତ୍ତିତ ସଂସ୍କରଣ ପ୍ରକାଶିତ ହେଲା । ନେସନାଲ ବୁକ୍ ଟ୍ରଷ୍ଟ ଉକ୍ତ ଲେଖକଙ୍କର ଜୀବନୀ ପୁସ୍ତକ ଉଭୟ କନ୍ନଡ ଓ ଇଂରାଜୀ ଭାଷାରେ ପ୍ରକାଶ କରିଛନ୍ତି । ଓଡ଼ିଆ ଭାଷାରେ ଏପରି ଅମୂଲ୍ୟ ଜୀବନୀ ପ୍ରକାଶିତ ହେଲେ ଅଗଣିତ ଓଡ଼ିଆ ଭାଇଭଉଣୀ, ଏହିପରି

ଜଣେ ମହାନ ଦେଶସେବକ ଇଞ୍ଜିନିୟର, ବୈଜ୍ଞାନିକ, ରାଷ୍ଟ୍ରନାୟକଙ୍କ ଆଦର୍ଶରେ ଅନୁପ୍ରାଣିତ ହେବାର ସୁଯୋଗ ପାଇବେ । ସେହି ମହାପୁରୁଷଙ୍କ ଜୀବନର ବିପୁଳ କୀର୍ତ୍ତିକୁ ଚୟନ କରିବା ପାଇଁ ଏ ପୁସ୍ତକଟି ମୋର ଏକ କ୍ଷୁଦ୍ର ପ୍ରୟାସ ମାତ୍ର ।

ସମ୍ମାନାସ୍ପଦ ସର୍ବଶ୍ରୀଯୁକ୍ତ ଇଂ ଆର୍ତ୍ତବନ୍ଧୁ ଜେନା, ଇଂ ନିମାଇଁ ଚରଣ ପାଣି, ଲେଖକ ଶ୍ରୀ ନରସିଂହ ମିଶ୍ର ଓ ଶ୍ରୀ ଭଗିରଥୀ ନେପାକ ଏହି ପାଣ୍ଡୁଲିପି ପ୍ରସ୍ତୁତ କରିବାରେ ଦିଗ୍‌ଦର୍ଶନ ଦେଇଥିବାରୁ ମୁଁ ସେମାନଙ୍କୁ ମୋର ଗଭୀର କୃତଜ୍ଞତା ଜଣାଉଛି ।

ସମ୍ମାନନୀୟ ଶ୍ରୀଯୁକ୍ତ ନିମାଇଁ ଚରଣ ପାଣି ପୁସ୍ତକଟିର ମୁଦ୍ରଣ ଦାୟିତ୍ୱ ବହନକରି ପାଣ୍ଡୁଲିପିର ସଂଶୋଧନ ଓ ଶୋଭନ ଦିଗରେ ଅକୁଣ୍ଠ ସହଯୋଗ ଦେଇଥିବାରୁ ମୁଁ ତାଙ୍କ ପାଖରେ ବିଶେଷ ଭାବରେ ଋଣୀ ।

ଇନ୍‌ଷ୍ଟିଚ୍ୟୁସନ ଅଫ୍ ଇଞ୍ଜିନିୟରସ୍ (ଇଣ୍ଡିଆ) ଓଡ଼ିଶା ସେଣ୍ଟରର ସଭାପତି ଇଂ ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର ଏ ପୁସ୍ତକରେ ତାଙ୍କର ମୂଲ୍ୟବାନ ଅଭିମତ ସନ୍ନିବେଶ କରିଥିବାରୁ ମୁଁ ତାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ଶେଷରେ ଭାରତ ରତ୍ନ ସାର୍ ଏମ୍. ବିଶ୍ୱେଶ୍ୱରୟାଙ୍କ ନିମ୍ନ କେତେକ ପଦରେ ଅଗଣିତ ପାଠକ ପାଠିକା ଉଦ୍‌ବୁଦ୍ଧ ହେବେ ବୋଲି ମୋର ଆଶା ।

"Exploitation of Human Potentiality through punctuality, sincerity and honesty leads a man to prosperity,"

ନରକାର ମହାଲିକ
ଲେଖକ

ପ୍ଲଟ୍ ଏନ୍ ୧/୮୨
ଆଇ. ଆର୍. ସି. ଭିଲେଜ
ନୂଆପଲ୍ଲୀ, ଭୁବନେଶ୍ୱର-୭୫୧୦୧୫
ଫୋନ-୫୫୪୫୨୭

# ଅଭିମତ

ଅବସରପ୍ରାପ୍ତ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଏବଂ ଇନ୍‌ଷ୍ଟିଚ୍ୟୁସନ୍ ଅଫ୍ ଇଞ୍ଜିନିୟରର୍ସର ଫେଲୋ ଶ୍ରୀଯୁକ୍ତ ନିରାକାର ମହାନ୍ତିକଙ୍କର ଦ୍ୱାରା ଲିଖିତ ପ୍ରଥିତଯଶା ଇଞ୍ଜିନିୟର ସାର୍ ଏମ୍. ବିଶ୍ୱେଶ୍ୱରୟାଙ୍କର ଜୀବନୀ ପଢିବାର ସୁଯୋଗ ମୋତେ ମିଳିଥିଲା । ଏହି କ୍ଷୁଦ୍ର ପୁସ୍ତକଟି ସପ୍ତଦଶ ପରିଚ୍ଛେଦ ବିଶିଷ୍ଟ ଏବଂ ସରଳ ଓଡ଼ିଆ ଭାଷାରେ ଲିଖିତ । ଏହି ପୁସ୍ତକରେ ବିଶ୍ୱେଶ୍ୱରୟାଙ୍କର ବାଲ୍ୟ ଜୀବନଠାରୁ ଆରମ୍ଭ କରି ସେ ଯଶ ଓ ସମ୍ମାନର ଶୀର୍ଷ ଦେଶରେ ପହଞ୍ଚିବା ପର୍ଯ୍ୟନ୍ତ ସମସ୍ତ ଘଟଣା ବିଶଦ ଭାବରେ ବର୍ଣ୍ଣନା କରାଯାଇଅଛି ।

ଯୁଗପୁରୁଷ ଇଂ. ବିଶ୍ୱେଶ୍ୱରୟା ଏକଶହ ବର୍ଷରୁ ଅଧିକ କାଳ ବଞ୍ଚିଥିଲେ । ତାଙ୍କର କର୍ମମୟ ଜୀବନ ଅବସାନ ହେବା ପର୍ଯ୍ୟନ୍ତ ସେ ନାନାବିଧ ଉନ୍ନତିମୂଳକ ଯୋଜନା ଓ କାର୍ଯ୍ୟରେ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଭାବରେ ସମ୍ପୃକ୍ତ ଥିଲେ । ସେ ଏକାଧାରରେ ଜଣେ ପ୍ରତିଭା ସମ୍ପନ୍ନ ବରିଷ୍ଠ ଯନ୍ତ୍ରୀ ହେବା ସଙ୍ଗେ ସଙ୍ଗେ ଜଣେ ଦକ୍ଷ ପ୍ରଶାସକ ହିସାବରେ ପରିଚିତ ଥିଲେ । ମହୀଶୂର ରାଜ୍ୟର ଯେଉଁ ସବୁ ଶିଳ୍ପ ସମୃଦ୍ଧି ଅଧୁନା ପରିଲକ୍ଷିତ ହୁଏ, ତାହା ମୂଳରେ ବିଶ୍ୱେଶ୍ୱରୟାଙ୍କ ଦାନଥିଲା ଉଲ୍ଲେଖନୀୟ । କାବେରୀନଦୀ ଉପରେ ମହୀଶୂର ସନ୍ନିକଟ କୃଷ୍ଣରାଜସାଗର ବନ୍ଧ ଏବଂ ତତ୍‌ସଂଲଗ୍ନ ମନୋରମ ବୃନ୍ଦାବନ ଉଦ୍ୟାନ ବିଶ୍ୱେଶ୍ୱରୟାଙ୍କର ଏକ ବିରଳ କୃତିତ୍ୱ ।

ସାର୍ ବିଶ୍ୱେଶ୍ୱରୟା ଜଣେ ସ୍ୱଦେଶପ୍ରେମୀ ଓ ସ୍ୱାଧୀନଚେତା ବ୍ୟକ୍ତିଥିଲେ । ଜଣେ ଭାରତୀୟ ବୋଲି ତାଙ୍କର ସ୍ୱାଭିମାନ ଥିଲା । ଯେତେବେଳେ ବମ୍ବେ ପ୍ରଦେଶରେ ଚିଫ୍ ଇଞ୍ଜିନିୟର ପଦବୀ ଖାଲି ହେଲା, ସେତେବେଳେ ତାଙ୍କୁ ସେ ପଦରେ ନିଯୁକ୍ତ କରା ନ ଯିବାରୁ ସେ ଚାକିରୀରୁ ଇସ୍ତଫା ଦେଇଥିଲେ । କାରଣ, ସେହି ପଦଟୀଟି ସେତେବେଳେ ଗୋରା ଲୋକଙ୍କ ପାଇଁ ସଂରକ୍ଷିତ ଥିଲା । ସେ ପରାଧୀନ ଭାରତର ଜଣେ ନାଗରିକ ହୋଇଥିବାରୁ ତାଙ୍କୁ ଏହି ପଦବୀରୁ ବଞ୍ଚିତ କରାଯାଇଥିଲା । ବମ୍ବେର ତତ୍‌କାଳୀନ ଗଭର୍ଣ୍ଣର ଗୋରା ଲୋକଙ୍କ ପାଇଁ ସଂରକ୍ଷିତ ଏହି ପଦବୀରେ ତାଙ୍କୁ ଅବସ୍ଥାପିତ କରିବାକୁ ପ୍ରତିଶ୍ରୁତି ଦେଇଥିଲେ ହେଁ ସେ ଇଂରେଜମାନଙ୍କର ପକ୍ଷପାତ ବିଧିର ଆଗରେ ମୁଣ୍ଡ ନ ନୁଆଁଇ ନିଜ ପଦରୁ ଇସ୍ତଫା ଦେଇଥିଲେ । ମହୀଶୂର ରାଜ୍ୟରେ ଅବସ୍ଥିତ ଭଦ୍ରାବତୀ ଲୁହା କାରଖାନାରେ ପୂର୍ବରୁ ୟୁରୋପିୟାନମାନେ ଉଚ୍ଚ ପଦବୀମାନଙ୍କରେ ଅଧିଷ୍ଠିତ ଥିଲେ । କ୍ରମଶଃ ଏହି କାରଖାନା ଏକ ରୁଗ୍‌ଣ ଅବସ୍ଥାକୁ ଆସିବାରୁ ସେ ଭାରତୀୟ ଇଞ୍ଜିନିୟରମାନଙ୍କୁ ୟୁରୋପିୟାନ୍‌ଙ୍କ ସ୍ଥାନରେ ନିଯୁକ୍ତି ଦେଇ ଶେଷରେ ଏହାକୁ ଏକ ଲାଭଜନକ ସଂସ୍ଥାରେ ପରିଣତ କରିଥିଲେ ।

ସାର୍ ବିଶ୍ୱେଶ୍ୱରୟାଙ୍କ ପରି ଜଣେ ସାଧୁ ଏବଂ ସଚ୍ଚୋଟ ବ୍ୟକ୍ତି ବର୍ତ୍ତମାନ ସମୟରେ ଦେଖିବା ବିରଳ । ଭଦ୍ରାବତୀ ଲୌହ ଓ ଇସ୍ପାତ କାରଖାନା ଲାଭଜନକ ଅବସ୍ଥାକୁ ଆସିଲା ପରେ ତାଙ୍କୁ ଏକଲକ୍ଷ ତିରିଶ ହଜାର ଟଙ୍କା ଅନରରିୟମ୍ ଆକାରରେ ମିଳିଥିଲା । ତାହା ସେ ନିଜର ବ୍ୟକ୍ତିଗତ ଖର୍ଚ୍ଚରେ ନ ଲଗାଇ ବାଙ୍ଗାଲୋରଠାରେ ଜୟଚାମ ରାଜେନ୍ଦ୍ର ଅକୁପେସନାଲ୍ ଇନ୍‌ଷ୍ଟିଚ୍ୟୁଟ୍ ପ୍ରତିଷ୍ଠା ଉଦ୍ଦେଶ୍ୟରେ ଦାନ କରିଦେଲେ । ତାଙ୍କର ଏହି ମହତ୍‌ଦାନ ଯୋଗୁଁ ଏହି ଅନୁଷ୍ଠାନଟି ତାଙ୍କର ନାମରେ ନାମିତ କରିବାକୁ ପ୍ରସ୍ତାବ ଆସିଥିଲା । ମାତ୍ର ସେ ଏହାକୁ ପ୍ରତ୍ୟାଖ୍ୟାନ କରି ମହୀଶୂର ମହାରାଜାଙ୍କ ନାମରେ ନାମିତ କରିବାକୁ ପରାମର୍ଶ ଦେଇଥିଲେ ।

ତାଙ୍କର ସାଧୁତାର ନିଦର୍ଶନ ସମ୍ପର୍କରେ କଥିତ ଅଛି ଯେ—ସେ ନିଜର ବ୍ୟକ୍ତିଗତ କାର୍ଯ୍ୟ ଓ ସରକାରୀ କାର୍ଯ୍ୟ ପାଇଁ ଦୁଇଟି ଭିନ୍ନ ଭିନ୍ନ କଲମ ଏବଂ କାଳି ବ୍ୟବହାର କରୁଥିଲେ ।

ଶ୍ରୀଯୁକ୍ତ ମହାଲିକଙ୍କର ପ୍ରଚେଷ୍ଟା ନିଶ୍ଚିତ ଭାବରେ ପ୍ରଶଂସନୀୟ । ସେ ଯେପରି ଭାବରେ ବିଶ୍ୱେଶ୍ୱରୟାଙ୍କ ଜୀବନୀକୁ ପାଠକମାନଙ୍କ ଆଗରେ ଉପସ୍ଥାପନ କରିଛନ୍ତି, ତାହା ନିଶ୍ଚିତ ଭାବରେ ସୁଖପାଠ୍ୟ ଓ ସ୍ୱାଗତଯୋଗ୍ୟ ।

ଆଜି ଇଂ. ସାର୍ ବିଶ୍ୱେଶ୍ୱରୟାଙ୍କର ପୁଣ୍ୟ ଜନ୍ମତିଥିରେ ଏହି ପୁସ୍ତକଟି ଉନ୍ମୋଚିତ ହେଉଥିବାରୁ ମୁଁ ଅତ୍ୟନ୍ତ ଆନନ୍ଦିତ ଏବଂ ଆଶାକରେ ଏହି କ୍ଷୁଦ୍ର ପୁସ୍ତକଟି ସାଧାରଣ ପାଠକ, ବିଶେଷତଃ ଇଞ୍ଜିନିୟର ବନ୍ଧୁମାନଙ୍କ ଦ୍ୱାରା ବେଶ୍ ଆଦୃତ ହେବ ।

ଇଂ. ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର
ଚେୟାରମ୍ୟାନ,
ଇନ୍‌ଷ୍ଟିଚ୍ୟୁସନ୍ ଅଫ୍ ଇଞ୍ଜିନିୟରର୍ସ (ଇଣ୍ଡିଆ)
ଓଡ଼ିଶା ଷ୍ଟେଟ୍ ସେଣ୍ଟର୍

ଭୁବନେଶ୍ୱର
ତା ୧୫. ୯. ୨୦୦୦

## ଏହି ବହି ସଂବଧରେ...

ଅବସର ପ୍ରାପ୍ତ ନିର୍ବାହୀ ଯନ୍ତ୍ରୀ ଇଂ ନିରକାର ମହାନ୍ତିକଙ୍କ ଦ୍ୱାରା ରଚିତ "ଇଂ ସାର୍ ବିଶ୍ୱେଶ୍ୱରୟା" ପୁସ୍ତକ ଅଧ୍ୟୟନ କରି ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି । ସେ ଭାରତର ଜଣେ ବହୁମୁଖୀ ପ୍ରତିଭାର ଅଧିକାଂଶ ସର୍ବଶ୍ରେଷ୍ଠ ଇଂଜିନିୟର ପ୍ରଶାସକଙ୍କ ବିରାଟ ବ୍ୟକ୍ତିତ୍ୱ ଓ ଅସାଧାରଣ କାର୍ଯ୍ୟ ତାଙ୍କର କ୍ଷୁଦ୍ର ପୁସ୍ତକରେ ସରଳ ଓଡ଼ିଆ ଭାଷାରେ ପ୍ରକାଶ କରିଛନ୍ତି ।

ଓଡ଼ିଆ ଭାଷାରେ ଆମର ବୈଷୟିକ ଶବ୍ଦ ଗୁଡ଼ିକ ପାଇଁ କୌଣସି ଅଭିଧାନ ଏ ପର୍ଯ୍ୟନ୍ତ ପ୍ରକାଶ ହୋଇ ପାରିନାହିଁ । ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶକ ସଂସ୍ଥା କେତେକ ଓଡ଼ିଆ ବିଜ୍ଞାନ ପରିଭାଷା ଓ ଇଲେକ୍‌ଟ୍ରିକାଲ୍ ଇଞ୍ଜିନିଅରିଂ ପରିଭାଷା ପ୍ରକାଶ କରିଥିଲେହେଁ ଅନ୍ୟାନ୍ୟ ଇଞ୍ଜିନିଅରିଂ ବିଭାଗମାନଙ୍କର ଓଡ଼ିଆ ପରିଭାଷା ପ୍ରସ୍ତୁତ ହୋଇ ନ ଥିବାରୁ ଓଡ଼ିଶାରେ ବୈଷୟିକ ପ୍ରବନ୍ଧ ବା ପୁସ୍ତକ ଲେଖିବା କଷ୍ଟକର ହେଉଅଛି । କିନ୍ତୁ ସୁଖର ବିଷୟ ଯେ ଇଂ ମହାନ୍ତିକ ସାର୍ ମୋକ୍ଷ ଗୁଣ୍ଡମ ବିଶ୍ୱେଶ୍ୱରୟାଙ୍କ ସ୍ୱୟଂକ୍ରିୟ ଗେଟ୍, ବ୍ଲକ ଜଳସେଚନ ପଦ୍ଧତି, ଏଡ଼େନ, ସୁକର, ପୁନା, ହାଇଦରାବାଦ ଇତ୍ୟାଦି ନଗରର ଜଳଯୋଗାଣ ବ୍ୟବସ୍ଥା, କୃଷ୍ଣରାଜସାଗର ଯୋଜନା, ମହୀଶୂର ରାଜ୍ୟର ଶିକ୍ଷା, କୃଷି, ଶିଳ୍ପ ଇତ୍ୟାଦି ବ୍ୟବସ୍ଥା ବିଭିନ୍ନ ନଦୀ ଉପତ୍ୟକାର ବହୁମୁଖୀ ବନ୍ଧ ଯୋଜନା, ଭଦ୍ରାବତୀ ଲୌହ ଇସ୍ପାତ କାରଖାନା ଓ ଆମରାଜ୍ୟର ବନ୍ୟା ନିୟନ୍ତ୍ରଣ ପ୍ରଣାଳୀ ଇତ୍ୟାଦି ବୈଷୟିକ କାର୍ଯ୍ୟ ସଂକ୍ଷେପରେ ଅତି ସରଳ ଓଡ଼ିଆ ଭାଷାରେ ବର୍ଣ୍ଣନା କରି ତାଙ୍କୁ (ଇଂ ବିଶ୍ୱେଶ୍ୱରୟାଙ୍କୁ) ଜଣେ ଦୂରଦର୍ଶୀ ପ୍ରଶାସକ ରୂପେ ଚିତ୍ରଣ କରି ପାରିଛନ୍ତି । ମହୀଶୂର ମହାରାଜାଙ୍କ ଦେବାନ ରୂପେ ସେ ପ୍ରକୃତରେ "ରାଜ୍ୟବାସୀଙ୍କ ପାଇଁ" ତାଙ୍କର ସମସ୍ତ ଶକ୍ତି ସାମର୍ଥ୍ୟ ଦେଇ ଯେଉଁ ଆଧୁନିକ କୋଣାର୍କ ନିର୍ମାଣ କରିଛନ୍ତି. ତାକୁ ମହୀଶୂର ଜନସାଧାରଣ କଦାପି ଭୁଲି ପାରିବେନାହିଁ । ମୁଁ ଶ୍ରୀ ମହାନ୍ତିକ FIEଙ୍କୁ ହାର୍ଦ୍ଦିକ ଧନ୍ୟବାଦ ଜ୍ଞାପନ କରୁଛି । ଆଶା କରୁଛି ଏହି କ୍ଷୁଦ୍ର ପୁସ୍ତକଟି ସବୁବିଭାଗର ଇଞ୍ଜିନିୟର ତଥା ଶିକ୍ଷିତ ଜନସାଧାରଣଙ୍କ ଦ୍ୱାରା ଆଦୃତ ହେବ ଏବଂ ଚିରଦିନ ପାଇଁ ଛାତ୍ରସମାଜ ଓ ଯୁବଇଞ୍ଜିନିୟରମାନଙ୍କର ପ୍ରେରଣାର ଉତ୍ସ ହୋଇ ରହିବ ।


ଇଂ. ଆର୍ତ୍ତବନ୍ଧୁ ଜେନା

ତା ୧୫-୯-୨୦୦୦

ଓଡ଼ିଶାର ଅବସରପ୍ରାପ୍ତ ଜଳସେଚନ ମୁଖ୍ୟଯନ୍ତ୍ରୀ

୮୪ ଗୌତମ, ନଗର

ଭୁବନେଶ୍ୱର-୧୪

# ସୂଚୀପତ୍ର

| ବିଷୟ | | ପୃଷ୍ଠା |
|---|---|---|

ପ୍ରଥମ ପରିଚ୍ଛେଦ :

# ବାଲ୍ୟ ଜୀବନ

ବିଶ୍ୱବକ୍ଷରେ ସମାଜର ଘଟଣା ପ୍ରବାହର ଅଭ୍ରାନ୍ତ ସାକ୍ଷ୍ୟ ବହନ କରେ ଇତିହାସ । ସେ ମନୁଷ୍ୟର ବିବର୍ତ୍ତନ ଅପେକ୍ଷା ବିବର୍ତ୍ତିତ କାଳ ବକ୍ଷରେ ତା'ର ଚେତନାର ଅଭିବ୍ୟକ୍ତିକୁ ଧାରଣ କରେ । ବହୁ ବର୍ଷର ମରୁଡ଼ି ପ୍ରପୀଡ଼ିତ ମହୀଶୂର ରାଜ୍ୟରେ ପ୍ରବଳ ବନ୍ୟାର ପ୍ରକୋପ ହୋଇଥିଲା ୧୮୬୧ ମସିହାରେ । ସେହିବର୍ଷ ସେପ୍ଟେମ୍ବର ୧୫ ତାରିଖରେ ଜନ୍ମ ନେଇଥିଲେ ବିଶ୍ୱ ବିଖ୍ୟାତ ଇଞ୍ଜିନିୟର ସାର୍ ମୋକ୍ଷଗୁଣ୍ଡମ ବିଶ୍ୱେଶ୍ୱରୟା । କିଏ ଜାଣିଥିଲା ସେ ଦିନେ ବୈଷୟିକ ଜ୍ଞାନକୌଶଳ ଓ ବନ୍ୟା ନିୟନ୍ତ୍ରଣରେ ସାରା ଭାରତକୁ ଦିଗ୍‌ଦର୍ଶନ ଦେବେ ବୋଲି ? ଏହି ବର୍ଷଟି ଭାରତ ଇତିହାସରେ ଏକ ଶୁଭଙ୍କର ଏବଂ ସ୍ମରଣୀୟ ସ୍ଥାନ ଗ୍ରହଣ କରିଛି, କାରଣ ଏହି ବର୍ଷରେ ଜନ୍ମ ନେଇଛନ୍ତି, ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁଙ୍କ ପିତା ମୋତିଲାଲ ନେହେରୁ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା ମହାମନା ମଦନ ମୋହନ ମାଲବ୍ୟ ଏବଂ ନୋବେଲ ପୁରସ୍କାର ବିଜେତା ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ।

ମୋକ୍ଷଗୁଣ୍ଡମ ବିଶ୍ୱେଶ୍ୱରୟାଙ୍କ ପିତାମହ ଓ ପ୍ରପିତାମହ କାବେରୀ ଉପତ୍ୟକାର କୋଣ୍ଡିଆପେଟ ଠାରେ ବସବାସ କରୁଥିଲେ । ଏହା ତାମିଲନାଡୁ ରାଜ୍ୟର ଦୁଇଟି ଦର୍ଶନୀୟ ସ୍ଥାନ ଜମ୍ବୁକେଶ୍ୱର ଓ ଶ୍ରୀରଙ୍ଗମର ନିକଟବର୍ତ୍ତୀ । ସମୟକ୍ରମେ ବିଶ୍ୱେଶ୍ୱରୟାଙ୍କ ପିତା କାବେରୀ ଉପତ୍ୟକାରୁ ଉଠିଆସି କୃଷ୍ଣାନଦୀ ଅବବାହିକାରେ ରାଜପ୍ରଦତ୍ତ ଏକ ବ୍ରାହ୍ମଣ ଶାସନରେ ବସବାସ କରୁଥିଲେ । ବ୍ରାହ୍ମଣ ଶାସନରେ ବସବାସ କରୁଥିବା ଅଧିବାସୀ ବ୍ରାହ୍ମଣଙ୍କୁ ଅଗ୍ରହର କୁହାଯାଏ । ଏହି ବ୍ରାହ୍ମଣ ଶାସନର ନାମଥିଲା ସିଦ୍ଧାନୁର । ଏହା ଆନ୍ଧ୍ରପ୍ରଦେଶର କୁର୍ନୁଲ ଜିଲ୍ଲାରେ ଅବସ୍ଥିତ । ସମ୍ଭବତଃ ତାଙ୍କର ପିତା ସେଠାରୁ ଆସି ମହୀଶୂରର କୋଲାର ଜିଲ୍ଲାରେ ଅବସ୍ଥାନ କରୁଥିଲେ ।

୧୮୬୧ ମସିହା ସେପ୍ଟେମ୍ବର ମାସର ୧୫ ତାରିଖ ଦିନ ବିଖ୍ୟାତ ସଂସ୍କୃତ ପଣ୍ଡିତ ଶ୍ରୀନିବାସ ଶାସ୍ତ୍ରୀଙ୍କ ଔରସରୁ ଓ ଧର୍ମପରାୟଣା ମାତା ଭେଙ୍କଟ ଲକ୍ଷ୍ମୀଆମ୍ମାଙ୍କ ଗର୍ଭରୁ ଜନ୍ମ ନେଇଥିଲେ ଶତାବ୍ଦୀ ପୁରୁଷ ସାର୍ ମୋକ୍ଷଗୁଣ୍ଡମ ବିଶ୍ୱେଶ୍ୱରୟା— ପୂର୍ବତନ ମହୀଶୂର ରାଜ୍ୟର କୋଲାର ଜିଲ୍ଲା ଅନ୍ତର୍ଗତ ଚିକବଲ୍ଲପୁର ତାଲୁକର ଏକ କ୍ଷୁଦ୍ର ପଲ୍ଲୀ ମୁଦେନାହାଲ୍ଲୀ ଠାରେ ।

ବିଶ୍ୱେଶ୍ୱରୟା ପିଲାଦିନେ ଚିକବଲ୍ଲପୁର ପ୍ରାଥମିକ ଏବଂ ନିମ୍ନ ମାଧ୍ୟମିକ ସ୍କୁଲରେ ଶିକ୍ଷା କରୁଥିଲେ । ପିତା ଶ୍ରୀନିବାସ ଶାସ୍ତ୍ରୀ ତୀର୍ଥ ଭ୍ରମଣରେ ରାମେଶ୍ୱରମ୍

ଯିବାପାଇଁ ସ୍ଥିରକରି ସାଥିରେ ସହଧର୍ମିଣୀ ଭେଙ୍କଟ ଲକ୍ଷ୍ମୀଆମ୍ମା ଓ ପୁତ୍ର ବିଶ୍ୱେଶ୍ୱରୟାଙ୍କୁ ନେଇଯାଇଥିଲେ । ସେ ସେଠାରେ ରାମନାଥ ସ୍ୱାମୀ ବା ରାମଲିଙ୍ଗ ଦର୍ଶନ ଓ ଧନୁଷ୍‌କୋଟୀ ଠାରେ ପବିତ୍ର ସମୁଦ୍ରସ୍ନାନର ମୋହ ସମ୍ବରଣ କରିନପାରି ସେଠାକୁ ପାଦରେ ଚାଲି ଚାଲି ଯାଇଥିଲେ ।

କିମ୍ବଦନ୍ତୀ ଅନୁସାରେ ମହାପ୍ରଭୁ ଶ୍ରୀରାମଚନ୍ଦ୍ର ଲଙ୍କାରେ ମହାପରାକ୍ରମୀ ରାବଣ ବଧ ପରେ ରାମେଶ୍ୱରକୁ ପ୍ରତ୍ୟାବର୍ତ୍ତନ କରି ରାବଣ ବଧ ଜନିତ ପାପକ୍ଷୟ ହୋଇନିବା ବିଶ୍ୱାସରେ ସେଠାରେ ଏକ ଶିବଲିଙ୍ଗ ସ୍ଥାପନ କରିବାକୁ ସ୍ଥିରକଲେ । ସେଥି ନିମିତ୍ତ ପରମଭକ୍ତ ହନୁମାନଙ୍କୁ କୈଳାସ ପଠାଗଲା । ପ୍ରତିଷ୍ଠାର ଶୁଭସମୟ ଅତିକ୍ରାନ୍ତ ହେବା ଭୟରେ ଦେବୀ ସୀତା ସେଠାରେ ବାଲୁକାରେ ଏକ ଶିବଲିଙ୍ଗ ସ୍ଥାପନ କରି ପୂଜାକଲେ । ସେହି ଲିଙ୍ଗ ହେଉଛି ରାମଲିଙ୍ଗ ବା ରାମନାଥସ୍ୱାମୀ । ତାର ହନୁମାନ କୈଳାସରୁ ଲିଙ୍ଗ ଆଣି ଦେଖିଲେ ଯେ ରାମଲିଙ୍ଗ ସେଠାରେ ଅଧିଷ୍ଠିତ ହୋଇସାରିଲେଣି ।

ଭକ୍ତ ହନୁମାନର ପରିଶ୍ରମ ବୃଥା ହେବା ଆଶଙ୍କାରେ କୈଳାସ ପର୍ବତରୁ ଆନୀତ ଲିଙ୍ଗକୁ ରାମଲିଙ୍ଗର ପାର୍ଶ୍ୱରେ ସ୍ଥାପନା କରାଗଲା । ସେହି ଲିଙ୍ଗର ନାମ "ବିଶ୍ୱଲିଙ୍ଗ" ବା "ହନୁମନ୍ତ ଲିଙ୍ଗ" । ପର୍ବତବର୍ଦ୍ଧିନୀ ପାର୍ବତୀ ରାମଲିଙ୍ଗର ଦକ୍ଷିଣରେ ସ୍ଥାପିତ ହେଲେ । ସେଠାରେ ପ୍ରଥମେ ବିଶ୍ୱଲିଙ୍ଗଙ୍କୁ ପୂଜା କରିସାରିବା ପରେ ଅନ୍ୟଦେବତା ପୂଜାପାଆନ୍ତି । ସପ୍ତଦଶ ଶତାବ୍ଦୀରେ ସେହି ମନ୍ଦିରରେ ଭାରତର ବୃହତ ମନ୍ଦିର କରିଡ଼ୋର ବା ପାର୍ଶ୍ୱପଥ ନିର୍ମିତ ହେବାର ଗୌରବ ଲାଭ କରିଛି ।

ଶ୍ରୀନିବାସ ଶାସ୍ତ୍ରୀ ରାମସ୍ୱାମୀ ମନ୍ଦିର ଦର୍ଶନ କରି ଧନୁଷ୍‌କୋଟୀ ଠାରେ ପବିତ୍ର ସମୁଦ୍ର ସ୍ନାନସାରି ତାଙ୍କର ପିତାମହ ଓ ପ୍ରପିତାମହଙ୍କ ଜନ୍ମସ୍ଥାନ ଜମ୍ବୁକେଶ୍ୱର ପରିଦର୍ଶନ କରିବାକୁ ଗଲେ । ସେତେବେଳେ ସେଠାରେ କାଞ୍ଚିକାମକୋଟୀର ଶଙ୍କରାଚାର୍ଯ୍ୟ ସାମୟିକ ଭାବେ ଅବସ୍ଥାନ କରୁଥାନ୍ତି । ସେଠାରେ ମୋକ୍ଷଗୁଣ୍ଡମ ବିଶ୍ୱେଶ୍ୱରୟାଙ୍କର ବ୍ରତୋପନୟନ କାର୍ଯ୍ୟ ସମାପନ କରି ସପରିବାର ପ୍ରତ୍ୟାବର୍ତ୍ତନ କଲେ ।

ଶ୍ରୀନିବାସ ଶାସ୍ତ୍ରୀ ପୁନରାୟ ତାଙ୍କର ପୂର୍ବବାସସ୍ଥାନ ଆନ୍ଧ୍ର ପ୍ରଦେଶର କୁରନୁଲକୁ ଯାଇଥିଲେ, ସେଠାରୁ ସେ ଆଉ ପ୍ରତ୍ୟାବର୍ତ୍ତନ କରିପାରିଲେ ନାହିଁ । ସେଠାରେ ପରମଗତି ପ୍ରାପ୍ତ ହେଲେ । ସେତେବେଳେ ବିଶ୍ୱେଶ୍ୱରୟାଙ୍କ ବୟସ ମାତ୍ର ପନ୍ଦର ବର୍ଷ ।

ବିଶ୍ୱେଶ୍ୱରୟା ଏକ ଅତି ଗରିବ ପରିବାରରେ ଜନ୍ମଲାଭ କରିଥିଲେ । ପେଟପୂରାଇ ଦୁଇଓଳି ଖାଇବାକୁ ତାଙ୍କର ସମ୍ବଳ ନଥିଲା । ସେତେବେଳେ ସେ ଚିକବଲ୍ଲପୁର ନିମ୍ନ ମାଧ୍ୟମିକ ସ୍କୁଲପାଠ ପଢ଼ିସାରିଥିଲେ । ସମ୍ବଳ ଅଭାବରୁ ତାଙ୍କ

ମାତାଙ୍କର ଉଚ୍ଚ ଶ୍ରେଣୀରେ ପଢ଼ାଇବା ପାଇଁ ସାମର୍ଥ୍ୟ ନ ଥିଲା । ତାଙ୍କର ମାମୁଁ ଏଚ୍. ରାମେୟା ସେତେବେଳେ ବାଙ୍ଗାଲୋରରେ ରହୁଥିଲେ । ଭଉଣୀଙ୍କ ସଙ୍ଗେ ପରାମର୍ଶ କରି ସେ ବିଶ୍ୱେଶ୍ୱରୟାଙ୍କୁ ସଙ୍ଗରେ ବାଙ୍ଗାଲୋର ନେଇଗଲେ ଏବଂ ସେଠାରେ ତାଙ୍କୁ ଖ୍ରୀ. ୧୮୭୫ରେ "ଓ୍ୱେସ୍‌ଲେୟାନ ମିଶନ ହାଇସ୍କୁଲ"ରେ ନାମ ଲେଖାଇ ଦେଲେ । ତାଙ୍କର ଶିକ୍ଷକ କୃଷ୍ଣଗିରି ରାଘବେନ୍ଦ୍ର ରାଓ ବିଶ୍ୱେଶ୍ୱରୟାଙ୍କ ମେଧା ଶକ୍ତିର ଭୂୟସୀ ପ୍ରଶଂସା କରୁଥିଲେ ।

ବିଶ୍ୱେଶ୍ୱରୟା ମାଟ୍ରିକୁଲେସନ ପାଶ୍ କରିସାରିବା ପରେ ସେଠାକାର ସେଣ୍ଟ୍ରାଲ କଲେଜରେ ନାମ ଲେଖାଇଲେ । ତାଙ୍କର ମାମୁଁଙ୍କର ଆର୍ଥିକ ସହାୟତାରେ ଟିଉସନ ଫିଜ୍ ଦେବା ଏବଂ ପୁସ୍ତକ କ୍ରୟକରିବା ସମ୍ଭବ ନ ହେବାରୁ ସେ ଘରେଇ ଟିଉସନ କରି ସମସ୍ତ ଖର୍ଚ୍ଚ ଚଳାଉଥିଲେ । ସେ ମହୀଶୂର ମହାରାଜାଙ୍କ ସଚୀବ ଶ୍ରୀ ମୁଦିୟାଙ୍କ ଘରେଇ ଟିଉଟର ଥିଲେ । ସେ ଟିଉସନ ସାରି ତାଙ୍କର ମାମୁଁ ଘରକୁ ଫେରି ମୁଠିଏ ଖାଇ ତିନି କିଲୋମିଟର ଦୂର ସେଣ୍ଟ୍ରାଲ କଲେଜକୁ ଯାଉଥିଲେ । ରାମରାଜପେଟଠାରେ ଥିବା ତାଙ୍କ ମାମୁଁ ରାମେୟାଙ୍କ ବାସଗୃହଠାରୁ ଟିଉସନ ଓ କଲେଜ ଏହିପରି ପ୍ରାୟ ଦଶ କିଲୋମିଟର ରାସ୍ତା ପ୍ରତ୍ୟହ ପାଦରେ ଚାଲି ଚାଲି ଯିବାକୁ ପଡୁଥିଲା ।

ବିଶ୍ୱେଶ୍ୱରୟା, ସ୍ୱୀୟ ଅଧ୍ୟବସାୟ ବଳରେ ସବୁ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ । ସେ ୧୮୮୧ ମସିହାରେ ସମସ୍ତଙ୍କ ଠାରୁ ଅଧିକ ନମ୍ବର ରଖି କୃତିତ୍ୱ ସହ ବି.ଏ. ପାଶ୍ କରିଥିଲେ । ତାଙ୍କର ଉଚ୍ଚ ଶିକ୍ଷାପାଇଁ ମହୀଶୂର ରାଜଦରବାରରୁ ସାହାଯ୍ୟ ମିଳିଲା । ବି.ଏ. ପାଶ୍ ପରେ ସେ ପୁନାସ୍ଥିତ ବିଜ୍ଞାନ କଲେଜରେ ଇଞ୍ଜିନିୟରିଂ ଅଧ୍ୟୟନ କଲେ । ସେ ୧୮୮୩ ମସିହାରେ ଇଞ୍ଜିନିୟରିଂରେ ଏଲ.ସି.ଇ. ଓ ଏଫ୍.ସି.ଇ. (ବର୍ତ୍ତମାନର ବି.ଇ. ପରୀକ୍ଷା ସହ ସମାନ) ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ସେ ସମୟରେ ଅତି କମ୍ ଛାତ୍ର ଇଞ୍ଜିନିୟରିଂ ପଢୁଥିଲେ । ଇଞ୍ଜିନିୟରିଂ ପଢ଼ା ଅତି କଷ୍ଟସାଧ୍ୟ ବିଦ୍ୟା ରୂପେ ସେତେବେଳେ ବିବେଚିତ ହେଉଥିଲା । ଯେଉଁମାନେ ଇଞ୍ଜିନିୟରିଂ ପଢୁଥିଲେ, ସେମାନେ ବେକାର ରହୁ ନଥିଲେ । ସଙ୍ଗେ ସଙ୍ଗେ ସେମାନଙ୍କୁ ଚାକିରୀ ମିଳି ଯାଉଥିଲା । ସେ ୧୮୮୪ ମସିହାରେ ବମ୍ବେ ସରକାରଙ୍କ ଇଞ୍ଜିନିୟରିଂ ବିଭାଗରେ ସହକାରୀ ଇଞ୍ଜିନିୟର ରୂପେ ଯୋଗ ଦେଇଥିଲେ । ପରେ ତାଙ୍କର କୃତିତ୍ୱ ପାଇଁ ବିଭିନ୍ନ ସ୍ଥାନରେ ମୁଖ୍ୟଯନ୍ତ୍ରୀ ବା ଚିଫ୍ ଇଞ୍ଜିନିୟର ରୂପେ କାର୍ଯ୍ୟକରି କୃତିତ୍ୱ ଅର୍ଜନ କରିଥିଲେ ।

ଗରିବ ଘରର ପିଲାଟିଏ କୌଣସି ଉଚ୍ଚ ଆସନରେ ଅଧିଷ୍ଠିତ ହେଲେ ନିଜର ଅତୀତକୁ ଭୁଲିଯାଏ । ଏକଦା ନିଜ ପରି ଗରିବ ଏବଂ ଦୁଃସ୍ଥଜନମାନଙ୍କୁ ମଧ୍ୟ ଅତି

ହେୟଜ୍ଞାନ କରେ । କିନ୍ତୁ ବିଶ୍ୱେଶ୍ୱରୟାଙ୍କ ସ୍ୱଭାବ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ନିଜର ଶୈଶବ ଅବସ୍ଥା ଅତ୍ୟନ୍ତ ଦରିଦ୍ର ଭାବେ କଟାଇ ଥିବାରୁ ସେ ଗରିବଙ୍କ କଲ୍ୟାଣ ପାଇଁ ସର୍ବଦା ବ୍ୟଗ୍ର ଥିଲେ ଏବଂ ଗୁରୁଜନମାନଙ୍କୁ ଅତ୍ୟନ୍ତ ଭକ୍ତି କରୁଥିଲେ । ଏହି ମହତ୍ ଗୁଣ ସେ ତାଙ୍କର ପିତାମାତାଙ୍କଠାରୁ ଶିକ୍ଷା କରିଥିଲେ ।

ବାଙ୍ଗାଲୋରର ଓ୍ୱେସ୍‌ଲେୟାନ ମିଶନ ହାଇସ୍କୁଲର ଶିକ୍ଷକ କୃଷ୍ଣଗିରି ରଘବେନ୍ଦ୍ର ରାଓ ନିଜ ଦରମାରେ ସନ୍ତୁଷ୍ଟ ନ ହୋଇ ସେଠାରୁ ତ୍ୟାଗପତ୍ର ଦେଇ ବାଙ୍ଗାଲୋରରେ ଓକିଲାତି ଶିକ୍ଷା କଲେ । ସେତେବେଳେ ସହରର ଏକ ପ୍ରସିଦ୍ଧ ପଡ଼ା 'ଚିକପେଟ'ଠାରେ ଅଫିସ ଖୋଲି ସେଠାରେ ଓକିଲାତି ବ୍ୟବସାୟ ଆରମ୍ଭ କରିଥାନ୍ତି । ଦିନକର ଘଟଣା, ସେଦିନ ରଘବେନ୍ଦ୍ର ରାଓ ଚାଲି ଚାଲି ତାଙ୍କର ଅଫିସକୁ ଯାଉଥିଲେ, ହଠାତ୍ ସାଙ୍କର ଅତି ନିକଟରେ ଏକ ଘୋଡ଼ାଗାଡ଼ି ଆସି ଠିଆ ହୋଇଗଲା । ସେ ହଠାତ୍ ଚମକି ପଡ଼ିଲେ । ସେଥିରୁ ସାହେବୀ ପୋଷାକ ପରିହିତ ଏବଂ ମସ୍ତକରେ ମହୀଶୂରୀ ପଗଡ଼ି ପିନ୍ଧିଥିବା ଜଣେ ଉଦୀୟମାନ ଯୁବକ ଓହ୍ଲାଇ ପଡ଼ିଲେ ଓ ଯୋଡ଼ହସ୍ତ ହୋଇ ତାଙ୍କର ପୂର୍ବତନ ଶିକ୍ଷକ ରଘବେନ୍ଦ୍ର ରାଓଙ୍କୁ ନମସ୍କାର ହେଲେ । ସମ୍ଭବତଃ ରଘବେନ୍ଦ୍ର ରାଓ ଚିକବଲ୍ଲପୁରର ସେହି ପୂର୍ବତନ ଛାତ୍ର ବିଶ୍ୱେଶ୍ୱରୟାର ପରିଚୟ ପାଇପାରି ନଥିଲେ !

ନିରବତା ଭଙ୍ଗକରି ହଠାତ୍ ମହୀଶୂରର ତତ୍‌କାଳୀନ ମୁଖ୍ୟଯନ୍ତ୍ରୀ ସାର୍ ବିଶ୍ୱେଶ୍ୱରୟା କହିଲେ, "ସାର୍ ମୁଁ ବିଶ୍ୱେଶ୍ୱରୟା, ଚିକବଲ୍ଲପୁରର ସେହି ପୁରାତନ ଛାତ୍ର ବିଶ୍ୱେଶ୍ୱରୟା ।"

ଶିକ୍ଷକ ରଘବେନ୍ଦ୍ର ରାଓ ଆନନ୍ଦରେ ଆତ୍ମହରା ହୋଇ ହସି ଉଠିଲେ ଏବଂ ବିଶ୍ୱେଶ୍ୱରୟାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରି ଗଦ୍‌ଗଦ୍ କଣ୍ଠରେ ଆଶୀର୍ବାଦ କରି କହିଲେ, "ତୁମକୁ ଧନ, ଜନ, ଗୋପ, ଲକ୍ଷ୍ମୀ ଚତୁଃବର୍ଗ ପ୍ରାପ୍ତି ହେଉ ।"

—*—

ଦ୍ୱିତୀୟ ପରିଚ୍ଛେଦ :

# ପ୍ରଥମ ଚାକିରୀ

୧୮୮୪ ମସିହାରେ ମୋକ୍ଷଗୁଣ୍ଡମ ବିଶ୍ୱେଶ୍ୱରୟା ବମ୍ବେ ସରକାରଙ୍କ ଅଧୀନରେ ପ୍ରଥମେ ଚାକିରି ଆରମ୍ଭ କରିଥିଲେ । ତାଙ୍କୁ ସେତେବେଳେ ମାତ୍ର ତେଇଶି ବର୍ଷ । ବମ୍ବେ ଏକ ବୃହତ୍ ପ୍ରଦେଶ ଥିଲା । ଏହା ସମଗ୍ର ମହାରାଷ୍ଟ୍ର, ଗୁଜୁରାଟ ଓ କର୍ଣ୍ଣାଟକର କେତେକ ଅଂଶକୁ ନେଇ ଗଠିତ ହୋଇଥିଲା । ସେ ବମ୍ବେ ଇଞ୍ଜିନିୟରିଂ ବିଭାଗରେ ସହକାରୀ ଯନ୍ତ୍ରୀ ରୂପେ ଯୋଗ ଦେଲାପରେ ତାଙ୍କୁ ସମଗ୍ର ନାସିକ ଜିଲ୍ଲା ଦାୟିତ୍ୱ ଦିଆଯାଇଥିଲା ଏବଂ ତାଙ୍କର କାର୍ଯ୍ୟାଳୟ ଧୂଲେ ଠାରେ ଥିଲା ।

ପଞ୍ଜରା ନଦୀ ତାପ୍ତି ନଦୀର ଏକ ଉପନଦୀ । ଏହି ଉପନଦୀରେ ଦିଶାରି ଠାରେ ଏକ ସାଇଫନ (ଜଳଭଣ୍ଡାର) ନିର୍ମାଣ କରି ତାର ଜଳକୁ ଉପକୂଳରେ ଥିବା ସମୁଚ୍ଚ ପାହାଡ଼କୁ କାଟି, ଡ୍ରିଲିଂ କରି ଅନ୍ୟ ଦିଗକୁ ନେବାପାଇ ଯୋଜନା ହୋଇଥାଏ । ବିଶ୍ୱେଶ୍ୱରୟାଙ୍କୁ ସେହି ସାଇଫନ ନିର୍ମାଣର ଦାୟିତ୍ୱ ଦିଆଗଲା ।

ଦିଶାରି ଗ୍ରାମଟି ଧୂଲେଠାରୁ ପ୍ରାୟ ୫୬ କିଲୋମିଟର ଦୂର । ଏହି ଦୁର୍ଗମ ଓ ବିପଦସଙ୍କୁଳ ସ୍ଥାନରେ ନିର୍ମାଣ କାର୍ଯ୍ୟ କରିବା ଅତ୍ୟନ୍ତ କଷ୍ଟସାଧ୍ୟ । ଏକେତ ଯାତାୟତର ସୁବିଧା ନଥିଲା । କେବଳ ଘୋଡ଼ାରେ ସେ ସ୍ଥାନକୁ ଯିବାକୁ ହୁଏ । ବିଶ୍ୱେଶ୍ୱରୟାଙ୍କର ପୁଣି ନୂଆ ଚାକିରି । ତାଙ୍କର କୌଣସି ଅଭିଜ୍ଞତା ମଧ୍ୟ ନଥିଲା ।

ବିଶ୍ୱେଶ୍ୱରୟା ନୂଆ କାର୍ଯ୍ୟଟି ଯଥାରୀତି ଆରମ୍ଭ କରିଦେଲେ । ପାହାଡ଼ କଟା କାର୍ଯ୍ୟଟି ଆଗେଇ ଚାଲିଥାଏ । ସାଇଫନ ନିର୍ମାଣ କରିବାକୁ ହେଲେ ଡ୍ରିଲିଂ କରି ଟନେଲ ନିର୍ମାଣ କରିବାକୁ ହେବ । କାର୍ଯ୍ୟଟି ସଫଳତାର ସହିତ ଆଗେଇ ଆସିଲା ବେଳକୁ ବର୍ଷାଋତୁ ଆରମ୍ଭ ହୋଇଯାଇଥାଏ । ନଦୀରେ ବନ୍ୟାପାଣି ଆସିବା ଦ୍ୱାରା ଟନେଲଟି ସର୍ବଦା ବାଲିରେ ପରିପୂର୍ଣ୍ଣ ହୋଇଯାଉଥାଏ । ପ୍ରତିଦିନ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ବାଲି ସଫା କରିବାକୁ ପଡ଼େ । ବାରମ୍ବାର ଏହିପରି କାର୍ଯ୍ୟରେ ଖର୍ଚ୍ଚ ଅଟକଳ ବଢ଼ିଯାଉଥାଏ । ସେ ତାଙ୍କର ଅଭିଜ୍ଞ ଅନୁବିଭାଗ ଅଧିକାରୀଙ୍କ ସଙ୍ଗେ ପରାମର୍ଶ କରି କାର୍ଯ୍ୟଟି ଅସ୍ଥାୟୀ ଭାବେ ବନ୍ଦ କରିଦେଲେ ଏବଂ ଜିଲ୍ଲା ନିର୍ବାହୀ ଯନ୍ତ୍ରୀଙ୍କୁ ଏହାର ଅନୁମୋଦନ ପାଇଁ ଜଣାଇ ଦେଲେ ।

ଜିଲ୍ଲା ନିର୍ବାହୀ ଯନ୍ତ୍ରୀଙ୍କଠାରୁ ଯେଉଁ ଉତ୍ତର ମିଳିଲା, ସେଥିରେ ସେ ସ୍ତମ୍ଭୀଭୂତ ହୋଇଗଲେ । "It does not augur well for one who is just beginning his career", "to suspend the work

entrusted to him, it would amount to disobedience". "କାମ ହଠାତ୍ ବନ୍ଦ କରିଦେବା କୌଣସି ଚାକିରି ଆରମ୍ଭ କରିଥିବା ବ୍ୟକ୍ତି ପକ୍ଷରେ ଶୋଭନୀୟ ନୁହେଁ—ଏହା ଅବାଧ୍ୟତା ରୂପେ ବିବେଚିତ ହୁଏ ।"

ବିଶ୍ୱେଶ୍ୱରୟା ଯେକୌଣସି ବିପଦ ସଙ୍କୁଳ କାର୍ଯ୍ୟ କରିବାକୁ ପଛାଇ ଯିବା ଲୋକ ନୁହନ୍ତି । ସେ ସ୍ଥିର କଲେ, ଯେକୌଣସି ପ୍ରକାରେ କାର୍ଯ୍ୟଟି ସମ୍ପୂର୍ଣ୍ଣ କରିବେ । ସେହି ମର୍ମରେ ସେ ଜିଲ୍ଲା ନିର୍ବାହୀ ଯନ୍ତ୍ରୀଙ୍କୁ ଏକ ପତ୍ର ଲେଖିଲେ ଏବଂ ସେଥିରେ ଦର୍ଶାଇଲେ ଯେ, ଖର୍ଚ୍ଚ ଅଟକଳ ଅଧିକ ବଢିଯିବ, ତେଣୁ ତାଙ୍କୁ ମୂଳ ଅଟକଳଠାରୁ ଅଧିକ ଖର୍ଚ୍ଚ କରିବାକୁ ଅନୁମତି ମିଳୁ ।

ସାଇଫନ ନିର୍ମାଣ କାର୍ଯ୍ୟ ଦ୍ରୁତତାର ସହ ଆଗେଇ ନେଲେ । ଡ୍ରିଲିଂ କରି ଅନେକ ସ୍ଥାନରେ ଡ଼ିନାମାଇଟ ସାହାଯ୍ୟରେ ପଥର ଫଟା ହେଉଥାଏ । କେଉଁଠି ଟନେଲ କାର୍ଯ୍ୟ ଆଗେଇ ଥାଏ ତ କେଉଁଠି ତିଖ ପାହାଡ଼ କାଟି ଶଯ୍ୟାପ୍ରସ୍ଥ ଚଉଡ଼ା ଏବଂ ଉତ୍ତମ ଭାବେ ଜଳର ନିଷ୍କାସନ ପାଇଁ ଆବଶ୍ୟକତା ଅନୁସାରେ ଗଭୀର କରିବାକୁ ପଡୁଥାଏ । ବନ୍ୟାଜଳ ପ୍ଲାବିତ ହେଲେ ନଦୀର ଅପର ପାର୍ଶ୍ୱକୁ ଯିବା ସମ୍ଭବ ହୁଏ ନାହିଁ । ସେ ଦିନ କାର୍ଯ୍ୟ ସମ୍ପୂର୍ଣ୍ଣ ବନ୍ଦ କରିବାକୁ ପଡ଼େ ।

ବିଶ୍ୱେଶ୍ୱରୟାଙ୍କୁ ପ୍ରତିଦିନ କାର୍ଯ୍ୟସ୍ଥଳିକୁ ଯିବାକୁ ହେଲେ ତାଙ୍କୁ ଘୋଡ଼ା ଚଢି ଚାରି କିଲୋମିଟର ବାଟ ପଞ୍ଜରା ନଦୀଶଯ୍ୟାରେ ଅତିକ୍ରମ କରିବାକୁ ପଡ଼େ । ଦିନକର ଘଟଣା, ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଥାଏ । ଅପରାହ୍ନରେ ଅବିଶ୍ରାନ୍ତ ବର୍ଷା ଫଳରେ ପଞ୍ଜରାରେ ବନ୍ୟା ଆସିଗଲା । ନଦୀ ଅତିକ୍ରମ କରି ପ୍ରଥମ କ୍ୟାମ୍ପକୁ ଯିବା ସମ୍ଭବ ହେଲାନାହିଁ । ତେଣୁ ତାଙ୍କୁ ଅନେକ ରାତି ପର୍ଯ୍ୟନ୍ତ ନଦୀରେ ବନ୍ୟା ପ୍ରକୋପ କମିବା ପର୍ଯ୍ୟନ୍ତ ଏକ ଅସ୍ଥାୟୀ ଶିବିରରେ ରହିବାକୁ ପଡ଼ିଲା । ସ୍ଥାନୀୟ ଭିଲ୍ଲ ଅଧିବାସୀମାନେ ତାଙ୍କ ଗହଣରେ ବିଶ୍ୱେଶ୍ୱରୟାଙ୍କୁ ପାଇ ବିପୁଳ ଆନନ୍ଦ ଉଲ୍ଲାସ ମଧ୍ୟରେ ଅତିଥି ସତ୍କାର କରିଥିଲେ । ଗଭୀର ରାତ୍ରିରେ ବନ୍ୟା ପ୍ରକୋପ ସାମାନ୍ୟ କମିବା ପରେ ବିଶ୍ୱେଶ୍ୱରୟା ଆଦିବାସୀ ଭିଲଙ୍କ ଦ୍ୱାରା ନିର୍ମିତ ଏକ ଭେଳା ସାହାଯ୍ୟରେ ନଦୀ ପାରହୋଇ ମୂଳ କ୍ୟାମ୍ପକୁ ଫେରିପାରିଲେ ଓ ସେଠାରେ କାର୍ଯ୍ୟରତ ମୂଲିଆଙ୍କ ଦ୍ୱାରା ତାଙ୍କ ଘୋଡ଼ାକୁ ପାର କରାଇଲେ ।

ବିଶ୍ୱେଶ୍ୱରୟା, ତାଙ୍କର ଚାକିରିର ପ୍ରଥମ ସୋପାନର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । କେତେକ ଅନଭିଜ୍ଞ ଆଦିବାସୀ ଭିଲ୍ଲ, କୁଶଳୀ ଓ ଅର୍ଦ୍ଧକୁଶଳୀ ରାଜମିସ୍ତ୍ରୀ ଏବଂ ପଥର କଟାଳୀମାନଙ୍କ ସାହାଯ୍ୟରେ ନିର୍ଦ୍ଦିଷ୍ଟ ଦୁଇମାସ ସମୟ ବ୍ୟବଧାନରେ କାର୍ଯ୍ୟଟିକୁ ସଠିକ୍ ଭାବରେ ସମ୍ପୂର୍ଣ୍ଣ କଲେ । ସାଇଫନରେ ପାଣି ସୁରୁଖୁରୁ ରୂପେ ପ୍ରବାହିତ ହେଲା । ନିକଟବର୍ତ୍ତୀ ଗ୍ରାମବାସୀମାନେ ଆନନ୍ଦରେ ନାଚି ଉଠିଲେ । ତାଙ୍କର

ଏହି ସଫଳତାର ପ୍ରଶଂସା ଉପର ହାକିମମାନେ ନକରି ରହିପାରିଲେ ନାହିଁ । ସେତେବେଳେ ତାଙ୍କର ନିର୍ବାହୀ ଯନ୍ତ୍ରୀ ଥିଲେ ଜଣେ ଗୋରା ସାହେବ । ତାଙ୍କର ନାମ ଥିଲା ଏଚ. ଜି. ପାଲିଜର । ସେ ବିଶ୍ୱେଶ୍ୱରୟାଙ୍କ କାର୍ଯ୍ୟ ଦକ୍ଷତା ଉପରେ ଏତେ ଖୁସୀ ହୋଇଗଲେ ଯେ, ତାଙ୍କ ଉପରେ ପୂର୍ବରୁ ଦିଆଯାଇଥିବା ପ୍ରତିକୂଳ ମନ୍ତବ୍ୟମାନ ଉଠାଇ ଦେଲେ ଏବଂ ତାଙ୍କ କାର୍ଯ୍ୟର ଉଚ୍ଚ ପ୍ରଶଂସା କଲେ ।

ବର୍ତ୍ତମାନ ପରି ସେତେବେଳେ ମଧ୍ୟ ଉଚ୍ଚ ବେତନ ଓ ଉଚ୍ଚ ପଦବୀ ପାଇଁ ବିଭାଗୀୟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ପଡୁଥିଲା । ପ୍ରତ୍ୟେକ କର୍ମଚାରୀଙ୍କୁ ପ୍ରାଦେଶିକ ଭାଷାରେ ଲେଖାପଢ଼ା ଜାଣିବା ଜରୁରୀ ହେଉଥିଲା । ବିଶ୍ୱେଶ୍ୱରୟା ମରହଟ୍ଟା ଭାଷା ବା ମରାଠୀ ପଢି ନଥିଲେ କିମ୍ବା ପଢ଼ିବା ପାଇଁ ଆଗ୍ରହ ପ୍ରକାଶ କରୁନଥିଲେ । ସେଥିପାଇଁ ତାଙ୍କର ହିତାକାଙ୍କ୍ଷୀ ନିର୍ବାହୀ ଯନ୍ତ୍ରୀ ପାଲିଜରଙ୍କ ଠାରୁ ଭର୍ତ୍ସନା ଶୁଣିବାକୁ ପଡ଼ିଥିଲା । ଏହି ଭର୍ତ୍ସନାହିଁ ତାଙ୍କୁ ଏହି ସବୁ ପରୀକ୍ଷା ଦେବାକୁ ପ୍ରେରଣା ଯୋଗାଇଲା, ବିଶ୍ୱେଶ୍ୱରୟା ସମସ୍ତ ପରିକ୍ଷାରେ ସର୍ବୋଚ୍ଚ ନମ୍ବର ରଖି କୃତକାର୍ଯ୍ୟ ହେଲେ । ସେଥିପାଇଁ କୋଡ଼ିଏ ମାସର ଚାକିରୀ ପରେ ତାଙ୍କର ମାସିକ ବେତନ ପାଞ୍ଚଶତ ଟଙ୍କା ହୋଇଗଲା । ଏହା ମହୀଶୂର ମହାରାଜାଙ୍କର ଅନୁମୋଦିତ ହେଲା । ସେ ମ୍ୟାଲେରିଆ ରୋଗରେ ପୀଡ଼ିତ ହେବାରୁ ସେଠାରୁ ବଦଳି ହୋଇ କୌଣସି ସ୍ୱାସ୍ଥ୍ୟକର ସ୍ଥାନକୁ ଆସିବାକୁ ଚାହିଁଥିଲେ ।

ବିଶ୍ୱେଶ୍ୱରୟାଙ୍କର ଉପରେ ତାଙ୍କ ଉପର ହାକିମ ଅତ୍ୟନ୍ତ ଖୁସିଥିଲେ । ତାଙ୍କର ଆବେଦନ ପହଞ୍ଚିଲା ପରେ ତାଙ୍କୁ ସେଠାରୁ ପୁନାକୁ ବଦଳି କରିଦେଲେ । କିନ୍ତୁ ତାଙ୍କର ବଦଳି ଜଳସେଚନ ଓ ଜଳଯୋଗାଣ ବିଭାଗନରୁ ପୁନାସ୍ଥିତ ରାସ୍ତା ଓ କୋଠାବାଡ଼ି ବିଭାଗକୁ ହୋଇଗଲା । ରାସ୍ତା ଓ କୋଠାବାଡ଼ି ନିର୍ମାଣ କାର୍ଯ୍ୟରେ ମଧ୍ୟ ବିଶ୍ୱେଶ୍ୱରୟା ରାଙ୍କର କାର୍ଯ୍ୟଦକ୍ଷତାର ଭୂୟସୀ ପ୍ରମାଣ ଦେଇଥିଲେ ।



# ସ୍ୱୟଂକ୍ରିୟ ଗେଟ୍

ଅଧୁନା ପାକିସ୍ଥାନର ସୁକୁର ସହର ସିନ୍ଧୁ ନଦୀକୂଳରେ ଅବସ୍ଥିତ । ସିନ୍ଧ୍ ପ୍ରଦେଶରେ ସୁକୁର ତତ୍‌କାଳୀନ ବମ୍ବେ ପ୍ରେସିଡ଼େନ୍‌ସିର ଅଂଶ ବିଶେଷ ଥିଲା । ଏହାର ଜଳବାୟୁ ଗୋରା ଲୋକମାନଙ୍କ ପାଇଁ ଜମା ଅନୁକୂଳ ନଥିଲା, କାରଣ ଏହାର ଜଳବାୟୁ ଥିଲା ଅତ୍ୟଧିକ ଗରମ କିମ୍ବା ଅତିମାତ୍ରାରେ ଥଣ୍ଡା । ଗ୍ରେଟ ସହରଟି ଅନୁନ୍ନତ ଅବସ୍ଥାରେ ଥିଲା । ସେ ସହରରେ ପାଇପ ଦ୍ୱାରା ଜଳଯୋଗାଣ ହୋଇପାରି ନଥିଲା । ସେଥିପାଇଁ ଜଣେ ଇଂରେଜ ଇଞ୍ଜିନିୟରଙ୍କୁ ସେଠାରେ ଅବସ୍ଥାପିତ କରାଯାଇଥିଲା । ଅସ୍ୱାସ୍ଥ୍ୟକର ଜଳବାୟୁରେ ସେ ନିଜକୁ ଖାପ ଖୁଆଇ ନପାରି ଫେରି ଆସିଲେ ।

ବମ୍ବେ ସରକାର ଟେଣ୍ଡର ଭବେ ଚିନ୍ତାକରି କର୍ମଚାରୀମାନଙ୍କର ମୂଳବେତନ ଉପରେ ଦୁଇଶତ ଟଙ୍କା ଅତିରିକ୍ତ ବେତନ ସହ ଘରଭଡ଼ା ପଚାଶ ଟଙ୍କା ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ଯୋଗାଇ ଦେଲେ । ସେତେବେଳେ ଜିଲ୍ଲାର ନିର୍ବାହୀ ଯନ୍ତ୍ରୀ ଇ. କେ. ରେନୋଲ୍‌ଡ୍ ଥିଲେ । ସେ ସମସ୍ତ ଘଟଣାର ଭଲ ମନ୍ଦ ପୁଙ୍ଖାନୁପୁଙ୍ଖ ବିଚାର କରି ସୁକୁର ଯିବାପାଇଁ ବିଶ୍ୱେଶ୍ୱରୟାଙ୍କୁ ପ୍ରସ୍ତାବ ଦେଲେ ।

ସାଧାରଣତଃ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ବଦଳି ହେଲେ ସରକାରୀ କର୍ମଚାରୀଟିକୁ ତାହାର ମତାମତ ପଚରା ହୁଏନାହିଁ, ମାତ୍ର ବିଶ୍ୱେଶ୍ୱରୟାଙ୍କ ପକ୍ଷରେ ଏହା ଥିଲା ଏକ ବ୍ୟତିକ୍ରମ । ରେନୋଲଡ଼୍ ସାହେବ ତାଙ୍କୁ ସୁକୁର ଯିବାକୁ ବାଧ ନକରି ପ୍ରସ୍ତାବ ଉପସ୍ଥାପନ କଲେ । ସେ କହିଲେ, "The work would be interesting and that you would be to a great extent your own master and it might be very beneficial to your name and reputation."

ବିଶ୍ୱେଶ୍ୱରୟାଙ୍କୁ ଏକ ପକ୍ଷରେ ପ୍ରଭୁତ ଆର୍ଥିକ ଏବଂ ଅନ୍ୟାନ୍ୟ ସୁବିଧା ଓ ଅନ୍ୟ ପକ୍ଷରେ ଅସ୍ୱାସ୍ଥ୍ୟକର ପରିସ୍ଥିତିରେ ସୁକୁର ସହରକୁ ଜଳ ଯୋଗାଣର ଦୁଃସାଧ ଆହ୍ୱାନ, ଦୁଇଟାରୁ ଗୋଟିକୁ ବାଛିନେବାକୁ କୁହାଗଲା । ସେ ପରିଶେଷରେ ସୁକୁର ଯିବାପାଇଁ ସମ୍ମତି ଜଣାଇଲେ । ନିର୍ବାହୀ ଯନ୍ତ୍ରୀଙ୍କ ସୁପାରିଶ ଅନୁସାରେ ସୁକୁର ଯିବା ପାଇଁ ବଦଳି ଆଦେଶ ବାହାରିଲା ।

ବିଶ୍ୱେଶ୍ୱରୟା ସେଠାରେ କାର୍ଯ୍ୟରେ ଯୋଗଦେଇ ସୁକୁର ସହର ଓ ସିନ୍ଧୁ ନଦୀ ଅଞ୍ଚଳ ତନ୍ନ ତନ୍ନ କରି ଅନୁସନ୍ଧାନରେ ଲାଗି ପଡ଼ିଲେ । ସିନ୍ଧୁ ନଦୀର ଜଳକୁ

କିପରି ସୁକୁର ସହରକୁ ଅତି କମ୍ ଖର୍ଚ୍ଚ ଅଟକଳରେ ଯୋଗାଇ ଦିଆଯାଇପାରିବ ତାର ଏକ ଯୋଜନା ପ୍ରସ୍ତୁତ କଲେ । ସେହି ଯୋଜନା ଅଟକଳ ବମ୍ବେ ସରକାର ଓ ସୁକୁର ମ୍ୟୁନିସପାଲିଟି ବା ପୌର ପରିଷଦର ଅନୁମୋଦନ ଲାଭ କଲା ।

ଜଳସେଚନ ପାଇଁ ଚାଷୀମାନଙ୍କର ଜଳ ଅତ୍ୟନ୍ତ ଆବଶ୍ୟକ । ସେହି ଜଳ ନଷ୍ଟ ନହୋଇ କିପରି ଯଥାର୍ଥରେ ବ୍ୟବହୃତ ହେବ ତାହା ଉକ୍ତ ଯୋଜନାରେ ବିସ୍ତୃତ ଭାବେ ଉଲ୍ଲେଖ କରାଯାଇଥିଲା । ସୁକୁରକୁ ଜଳ ଯୋଗାଇବା ସଙ୍ଗେ ସଙ୍ଗେ ସାଧାରଣ ଚାଷୀଙ୍କୁ କିପରି ଜଳ ଯୋଗାଯାଇ ପାରିବ ତାର ଚିନ୍ତା ବିଶ୍ୱେଶ୍ୱରାୟା ହିଁ ପୂର୍ବରୁ ପ୍ରସ୍ତୁତ କରିଥିଲେ । କିନ୍ତୁ ଯୋଜନାଟି ବମ୍ବେ ସରକାରଙ୍କ ଅନୁମୋଦନ ଲାଭ କରିଥିଲେ ମଧ୍ୟ ସୁକୁର ପୌରପରିଷଦର ସର୍ତ୍ତମୂଳକ ଅନୁମୋଦନ ପାଇଥିଲା । ତାହାହେଲା ଜଳର ବିଶୋଧିକରଣ ପ୍ଲାଣ୍ଟ ପାଇଁ ଯାହା ଖର୍ଚ୍ଚ ହେବ ତାକୁ ପରିଷଦ ଆଉ ବହନ କରିପାରିବ ନାହିଁ ।

ବିଶ୍ୱେଶ୍ୱରାୟା ମୂଳ ଅଟକଳର କେତେକ ସଂଶୋଧନ କରି ଜଳ ବିଶୋଧିକରଣ ପ୍ଲାଣ୍ଟ ସ୍ଥାନରେ ଏକ ନୂତନ ପଦ୍ଧତି ଆବିଷ୍କାର କଲେ । ସେ ସିନ୍ଧୁ ନଦୀରେ ଏକ ଗୋଲକାର କୂପ ନିର୍ମାଣ କଲେ । ସେହି କୂପରେ ନିମ୍ନ ଅଂଶରେ ମହୁଫେଣା ଆକାରରେ ଛିଦ୍ର ରଖାଗଲା । କୂପର ନିମ୍ନ ଭାଗରୁ ନଦୀର ବାଲିସ୍ତର ଦେଇ ନିର୍ମଳ ଜଳ କୂପ ମଧ୍ୟକୁ ସେହି ଛିଦ୍ର ପଥ ଦେଇ ପ୍ରବେଶ କଲାପରେ ତାକୁ ନିକଟସ୍ଥ ପାହାଡ଼ ଉପରେ ଥିବା ଟାଙ୍କି ମଧ୍ୟକୁ ପମ୍ପ ସାହାଯ୍ୟରେ ପ୍ରେରଣ କରାଗଲା । ଟାଙ୍କିରେ ଯେଉଁ ପାଣି ଜମା ହେଲା ତାହା ନିର୍ମଳ ଓ ବିଶୁଦ୍ଧ । ସେହି ବିଶୁଦ୍ଧ ଜଳ ପାଇପ ସାହାଯ୍ୟରେ ସୁକୁର ସହରକୁ ଯୋଗାଇ ଦିଆଗଲା । ସୁକୁର ପୌରପରିଷଦ ଅଧିକ ଖର୍ଚ୍ଚରୁ ବଞ୍ଚିଗଲା । ବର୍ତ୍ତମାନ ଉନ୍ନତ ସମାଜରେ ଏହା ଏକ ମାମୁଲି ଘଟଣା ହେଲେ ମଧ୍ୟ, ଊନବିଂଶ ଶତାବ୍ଦୀରେ ଏହି ନୂତନ ପଦ୍ଧତି ବିଶ୍ୱେଶ୍ୱରାୟାଙ୍କ ସମ୍ମାନକୁ ବହୁ ଗୁଣରେ ବଢ଼ାଇ ଦେଇଥିଲା ।

ସେତେବେଳେ ସୁରତ ସହରକୁ ପଶ୍ଚିମାଭିମୁଖୀ ତାପ୍ତି ନଦୀରୁ ଜଳଯୋଗାଣ ପାଇଁ ଆବଶ୍ୟକତା ଉପଲବ୍ଧ ହେବାରୁ ବିଶ୍ୱେଶ୍ୱରାୟାଙ୍କ ନାମ ସୁପାରିଶ ହେଲା । ଏହି ପରିକଳ୍ପନାର ସଫଳ ରୂପାୟନ ପାଇଁ ତାଙ୍କ ଉପରେ ଏହାର ସମସ୍ତ ଦାୟିତ୍ୱ ନ୍ୟସ୍ତ କରାଗଲା ।

ମହାରାଷ୍ଟ୍ରର ପୁନା ସହର ଏବଂ କାର୍କେଠାରେ ଥିବା ସୈନ୍ୟ ବିଭାଗର ବସତିକୁ ଜଳଯୋଗାଣର ଏକ ଯୋଜନା କାର୍ଯ୍ୟକାରୀ କରାଯାଇଛି । ପୁନାର ନିକଟବର୍ତ୍ତୀ ଅଞ୍ଚଳରେ ମୁଷାନଦୀ ପ୍ରବାହିତ ହେଉଛି । ଏହି ନଦୀ କୃଷ୍ଣାନଦୀର ଏକ ଭୀମନଦୀ ନାମକ ଏକ ଉପନଦୀରେ ପଡ଼ିଛି । ମୁଷାନଦୀ ଉପରେ ଏକ ଆନିକଟ ନିର୍ମିତ ହୋଇ, କେନାଲ ଯୋଗେ ପାଣି ଅଣାଯାଇ ଏକ କୃତ୍ରିମ ହ୍ରଦ 'ଫିଫ୍'

ମଧ୍ୟରେ ଗଚ୍ଛିତ ରଖାଯାଏ । ଏହି ଫିଫ୍ ହ୍ରଦରୁ ପୁନା ଏବଂ କାର୍କେକୁ ଜଳ ଯୋଗାଇ ଦିଆଯାଏ ।

ଖରାଦିନେ ଏହି ହ୍ରଦରୁ ପାଣି ଶୁଖିଯାଏ । ଚିରସ୍ରୋତା ହୋଇ ନ ଥିବାରୁ କେନାଲରେ ପାଣି ଆସେ ନାହିଁ । ବର୍ଷାଦିନେ ବନ୍ୟା ହୋଇ ବଳକା ପାଣି ସବୁ ନିମ୍ନ ଭାଗକୁ ଗଳିଯାଏ । ଆନିକଟକୁ ଅଧିକ ଉଚ୍ଚ କଲେ ଜଳସ୍ତର ବୃଦ୍ଧିପାଇ ନଦୀକୂଳରେ ଥିବା ଖାଲୁଆ ବସ୍ତି ଅଞ୍ଚଳ ଜଳପ୍ଲାବିତ ହେବାର ସମ୍ଭାବନା ଥାଏ । ଆନିକଟର ବନ୍ଧର ଉଚ୍ଚତା ବୃଦ୍ଧି କରାଗଲେ ତାର ଦୃଢ଼ତା ଉପରେ ଆଞ୍ଚ ଆସିପାରେ । ଏପରି ହେଲେ ବନ୍ଧଭାଙ୍ଗି ଯାଇ ହେବାର ସମ୍ଭାବନା ଅଧିକ । ଯାଇ ହେଲେ ନିମ୍ନ ଅଂଶ ବିଶେଷ ଭାବେ କ୍ଷତିଗ୍ରସ୍ତ ହେବାର ମଧ୍ୟ ସମ୍ଭାବନା । ଏହି ଗୋଲକ ଧନ୍ଦାର ସମାଧାନ କରିବାକୁ କେବଳ ମୋକ୍ଷଗୁଣ୍ଡମ ବିଶ୍ୱେଶ୍ୱରୟାହିଁ ସକ୍ଷମ !

ବିଶ୍ୱେଶ୍ୱରୟା ଆନିକଟର ବନ୍ଧ ଉପରେ ଲୌହ କବାଟ ଲଗାଇବାର ପଦ୍ଧତି ଉଦ୍ଭାବନ କଲେ । ଏହି ଲୌହ କବାଟ ଗୁଡ଼ିକ ସ୍ୱୟଂଚାଳିତ କବାଟ । ସେ ଡ଼ିଜାଇନ ବା ନକ୍ସା କରି ଏହି କବାଟର ଉଚ୍ଚତା ଅଢ଼େଇ ମିଟର ରଖିଥିଲେ । ସେ ହିସାବ କରି ଦେଖିଲେ, ଅଢ଼େଇ ମିଟର ବା ଆଠଫୁଟ ଉଚ୍ଚରୁ ଅଧିକ ପାଣି ଗଚ୍ଛିତ ରଖିଲେ ପ୍ରଥମେ ଆନିକଟର ଦୃଢ଼ତାରେ ଆଞ୍ଚ ଆସିବ ଏବଂ ଦ୍ୱିତୀୟରେ ଆଉ ଅଧିକ ପାଣି ଗଚ୍ଛିତ ହେଲେ କୂଳରେ ଥିବା ଜନବସତି ପ୍ଲାବିତ ହେବ ।

ବିଶ୍ୱେଶ୍ୱରୟା ତାଙ୍କର ସ୍ୱୟଂ ଚାଳିତ ଗେଟ୍ ବା କବାଟ ଗୁଡ଼ିକର ନକ୍ସା ଏପରି ନିର୍ମାଣ କଲେ ଯେ, ଅଢ଼େଇ ମିଟରର ଉଚ୍ଚତାରେ ଜଳସ୍ତର ରହିଲେ କବାଟ ଗୁଡ଼ିକ ଠିଆହୋଇ ରହିବ, ମାତ୍ର ଅଢ଼େଇ ମିଟରଠାରୁ ଜଳସ୍ତର ଅଧିକ ହେଲେ କବାଟ ଗୁଡ଼ିକ ଶଯ୍ୟାର ସମାନ୍ତରାଳ ହୋଇ ଶୋଇ ଯିବ । କବାଟ ଉପରେ ଗଚ୍ଛିତ ଜଳ ପ୍ରବାହିତ ହୋଇ ଜଳସ୍ତର ଅଢ଼େଇ ମିଟରରୁ ତଳକୁ କମିଗଲେ ସ୍ୱୟଂକ୍ରିୟ ଭାବେ କବାଟ ଗୁଡ଼ିକ ପୁନର୍ବାର ଉଠିପଡ଼ିବ ।

ଏହି ବ୍ୟବସ୍ଥା ସାଧାରଣ ଲୋକମାନଙ୍କ ପାଖରେ ଚହଳ ପକାଇବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ବିଦେଶୀ ଇଞ୍ଜିନିୟରମାନଙ୍କ ଦୃଷ୍ଟି ଆକର୍ଷଣ କଲା, ସେତେବେଳେ ବମ୍ବେ ପ୍ରଦେଶର ଶାସନଭାର ଇଂରେଜମାନଙ୍କ ହାତରେ ଥିଲା । ବିଶ୍ୱେଶ୍ୱରୟାଙ୍କ ଚିଫ୍ ଇଞ୍ଜିନିୟର ମଧ୍ୟ ଜଣେ ଗୋରା ସାହେବ ।

ଇଂରେଜ ଚିଫ୍ ଇଞ୍ଜିନିୟର ଓ ଅନ୍ୟ ଅଫିସରମାନେ ବିଶ୍ୱେଶ୍ୱରୟାଙ୍କ ସ୍ୱୟଂ ଚାଳିତ କବାଟ ବ୍ୟବସ୍ଥା ସମ୍ପର୍କରେ ପ୍ରଥମ ଅବସ୍ଥାରେ ସନ୍ଦେହ ପ୍ରକାଶ କରିଥିଲେ । ସେଥିପାଇଁ ତାଙ୍କ ଯୋଜନାକୁ ପରୀକ୍ଷା କରିବା ପାଇଁ ବମ୍ବେ ପ୍ରାଦେଶିକ ସରକାର ଏକ ବିଶେଷଜ୍ଞ କମିଟି ନିଯୁକ୍ତ କରିଥିଲେ । ଉକ୍ତ କମିଟିରେ ଅଧିକାଂଶ ଥିଲେ ଗୋରା ଇଞ୍ଜିନିୟର ଓ ବିଶେଷଜ୍ଞ । ସେମାନେ ଯୋଜନାକୁ ତନ୍ନତନ୍ନ ପରିକ୍ଷା କରି, ଅନେକ

ଗୁଡ଼ିଏ ପ୍ରଶ୍ନପତ୍ର ତିଆରି କରି, ବିଶ୍ୱେଶ୍ୱରୟାଙ୍କୁ ସାକ୍ଷାତକାର ପାଇଁ ଡ଼କାଇଲେ । ବିଶ୍ୱେଶ୍ୱରୟା ସେମାନଙ୍କର ସମସ୍ତ ପ୍ରଶ୍ନର ଉତ୍ତର ଦେବା ସଙ୍ଗେ ସଙ୍ଗେ ତନ୍ନ ତନ୍ନ ଭାବେ ସମସ୍ତଙ୍କୁ ବୁଝାଇଦେଇ ସନ୍ଦେହ ଦୂରକଲେ । ଶେଷରେ ତାହା ଅନୁମୋଦିତ ହେଲା । ଅନୁମୋଦିତ ନକସା ଅନୁସାରେ ସେହି ଆନିକଟରେ ସ୍ୱୟଂଚାଳିତ କବାଟ ଲଗାଇ ସେ ସଫଳତା ହାସଲ କଲେ । ଇଂରେଜ ବିଶେଷଜ୍ଞମାନେ ବିଶ୍ୱେଶ୍ୱରୟାଙ୍କ ଇଞ୍ଜିନିୟରିଂ କୌଶଳର ଉଚ୍ଚ ପ୍ରଶଂସା ନକରି ରହିପାରିଲେ ନାହିଁ ।

ଫୁଲର ବାସନା ପବନର ଅନୁକୂଳରେ ପ୍ରବାହିତ ହୁଏ, ମାତ୍ର ଗୁଣର ଗନ୍ଧ ଉଭୟ ପବନର ଅନୁକୂଳ ଓ ପ୍ରତିକୂଳରେ ମଧ୍ୟ ଗତିକରେ । ବିଶ୍ୱେଶ୍ୱରୟାଙ୍କର ଏହି ସଫଳତା ଭାରତର କମାଣ୍ଡର-ଇନ୍-ଚିଫ୍ "ଲର୍ଡ କୀଚେନର"ଙ୍କ ନିକଟରେ ପହଞ୍ଚିଲା । ସେ ଏହି ସ୍ୱୟଂଚାଳିତ ଗେଟ୍‌ର ଏକ ନକ୍‌ସା ଏବଂ ମଡ଼େଲ ନେଇ ଏହାକୁ ଏକ ପେଟେଣ୍ଟ କରିଦେଲେ । ଏହି ପେଟେଣ୍ଟର ସ୍ୱତ୍ୱାଧିକାର ମୋକ୍ଷଗୁଣ୍ଡମ ବିଶ୍ୱେଶ୍ୱରୟାଙ୍କର ରହିଲା । ଏହି ସ୍ୱୟଂଚାଳିତ ଗେଟ୍ ଗୁଡ଼ିକ ଖଡ଼କଭସାଲଠାରେ ଫିଫ୍ ହ୍ରଦରେ ଲଗାହୋଇ ଥିବାରୁ ବିଶ୍ୱେଶ୍ୱରୟାଙ୍କୁ ଯେଉଁ ରଜଭାଗ ବା ରୟାଲିଟି ପାଇବା କଥା, ତାହା ସେ ଗ୍ରହଣ କଲେ ନାହିଁ । ତାଙ୍କ ମତରେ ସରକାରୀ ଚାକିରିରେ ରହି ଯେଉଁ କାର୍ଯ୍ୟ ସେ କରିଛନ୍ତି ତା'ପାଇଁ ରଜଭାଗ ନେବା ଉଚିତ ନୁହେଁ । ଏହା ତାଙ୍କର ମହାନୁଭବତାର ପରିଚୟ ଦିଏ ।

ପରବର୍ତ୍ତୀ ସମୟରେ ଏହିପରି ନମୁନାର ଗେଟ୍ ଗୁଡ଼ିକ ଗୋଆଲିୟରର ଟାଇଗ୍ରା ଓ ମହୀଶୂରର କୃଷ୍ଣରାଜ ସାଗର ଓ ଅନ୍ୟାନ୍ୟ ନଦୀବନ୍ଧ ଯୋଜନାରେ ବ୍ୟବହୃତ ହୋଇ ସଫଳତା ହାସଲ କରିଛି ।

—*—

ଚତୁର୍ଥ ପରିଚ୍ଛେଦ :

# ବ୍ଲକ୍ ଜଳସେଚନ ପଦ୍ଧତି

୧୮୯୯ ବର୍ଷହାରେ ମୋକ୍ଷଗୁଣ୍ଡମ ବିଶ୍ୱେଶ୍ୱରୟା ସୁରଟରୁ ବଦଳି ହୋଇ ପୁନା ଆସିଲେ । ପୁନାରେ ସହରକୁ ଜଳଯୋଗାଣ ସଙ୍ଗେ ସଙ୍ଗେ ଚାଷୀମାନଙ୍କର ଜମିକୁ ଜଳସେଚନ ଅତ୍ୟନ୍ତ ଜରୁରୀ ହୋଇପଡ଼ିଲା । ଚାଷପାଇଁ ସମସ୍ତ ଜମିକୁ ଆବଶ୍ୟକ ପରିମାଣରେ ଜଳଯୋଗାଇ ଦେବା ସମ୍ଭବ ହେଲା ନାହିଁ ।

ମୁଥାନଦୀର କେନାଲ ଉପର ମୁଣ୍ଡରେ ପ୍ରଚୁର ଜଳ ପ୍ରବାହିତ ହେଉଥାଏ । ଜଳସେଚନ ପାଇଁ ଯେତେ ଜଳ ଆବଶ୍ୟକ ତା ବ୍ୟତୀତ ମଧ୍ୟ ପ୍ରଚୁର ବଳକା ଜଳ ନିମ୍ନଭାଗକୁ ବହି ଯାଏ । ସେହି କେନାଲର ତଳ ଅଞ୍ଚଳରେ ସ୍ୱଳ୍ପ ପରିମାଣ ଜଳପାଇଁ ଫସଲ ମରୁଡ଼ି ଗ୍ରସ୍ତ ହୁଏ । ସେଥିପାଇଁ କେନାଲର ତଳ ଅଞ୍ଚଳର ଚାଷୀମାନେ ବହୁତ ଅସନ୍ତୋଷରେ ଥିଲେ ।

ବିଶ୍ୱେଶ୍ୱରୟା ସରଜମିନ ତଦନ୍ତ କରି ପାଳିପ୍ରଥା ପ୍ରଚଳନ କଲେ । ପ୍ରଥମେ କେନାଲର ଶେଷ ଅଞ୍ଚଳରୁ ପାଳି ଆରମ୍ଭ କରି ଉପର ମୁଣ୍ଡକୁ ଜଳସେଚନ କରି ଆସିଲେ । ସର୍ବସାଧାରଣ ଭାବେ ସମସ୍ତ ଚାଷୀ ଜଳବଣ୍ଟନ କରି ଫସଲ ରକ୍ଷାକଲେ । ବଡ଼ଚାଷୀ ଏବଂ ବଡ଼ ବଡ଼ ଜମି ମାଲିକମାନେ ଉପର ମୁଣ୍ଡରେ ନିଜ ଇଚ୍ଛା ଅନୁସାରେ ପାଣି ନେଉଥିଲେ । ସେମାନଙ୍କ ମଧ୍ୟରେ ବିଦ୍ରୋହ-ବହ୍ନି ଜଳିଉଠିଲା । ତତକାଳୀନ ସାପ୍ତାହିକୀ ମରାଠୀ ସମ୍ବାଦପତ୍ର "କେଶରୀ"ରେ ଏହି ପ୍ରଥା ବିରୁଦ୍ଧରେ ଅନେକ ଗୁଡ଼ିଏ ଲେଖା ପ୍ରକାଶିତ ହେଲା ।

ଏହି ପ୍ରଥା ବିରୁଦ୍ଧରେ ବଡ଼ ବଡ଼ ଚାଷୀମାନେ ଲୋକମାନ୍ୟ ବାଳ ଗଙ୍ଗାଧର ତିଳକଙ୍କ ନିକଟରେ ଅଭିଯୋଗ ଆଣିଲେ । ସେ ଜଣେ ଚରମପନ୍ଥୀ ନେତା ଥିଲେ । ସେତେବେଳେ ପୁନାରେ ଭାରତର ପ୍ରଖ୍ୟାତ ନେତା ରାଣାଡ଼େ, ଖପରଡ଼େ, କେଲକାର, ଗୋଖଲେ ଓ ତିଳକ ପ୍ରଭୃତି ଥିଲେ । ଇଂରେଜ ସରକାରଂକ ବିରୁଦ୍ଧରେ ଆନ୍ଦୋଳନାତ୍ମକ ପନ୍ଥା ଗ୍ରହଣ କରିଥାନ୍ତି । ବିଶ୍ୱେଶ୍ୱରୟା ଏହି ପାଳି ବା ରୋଟେସନ ପ୍ରଥା କାଳେ ଜାତୀୟ ଆନ୍ଦୋଳନରେ ପରିଣତ ହୋଇଯିବ, ଏହି ଆଶଂକାରେ ସେ ସରକାରଂକର ଦୃଷ୍ଟି ଆକର୍ଷଣ କଲେ । ତାଂକର ଚିଫ୍ ଇଞ୍ଜିନିୟର ସରକାରଂକ ତରଫରୁ ବିଶ୍ୱେଶ୍ୱରୟାଙ୍କ ଉପରେ ପୂର୍ଣ୍ଣ ଆସ୍ଥା ରଖି କାର୍ଯ୍ୟରେ ଆଗେଇ ଯିବାକୁ କହିଲେ ।

ବିଶ୍ୱେଶ୍ୱରୟା ଏତିକିରେ ଆଶ୍ୱସ୍ତ ହୋଇ ରହିପାରିଲେ ନାହିଁ । ସେ ଜାଣିଥିଲେ ବଳପୂର୍ବକ କୌଣସି କାର୍ଯ୍ୟକଲେ ତାହା ବେଶୀଦିନ ରହିପାରେ ନାହିଁ । ସେ ଜମିଦାର, ବଡ଼ ବଡ଼ ଚାଷୀ, ସମ୍ଭ୍ରାନ୍ତ ଅଫିସର ଏବଂ ସେ ଅଞ୍ଚଳର ବିଶିଷ୍ଟ

ଲୋକମାନଙ୍କର ଏକ ସମ୍ମିଳନୀ ଡ଼କାଇଲେ । ସେ ଜଳବଣ୍ଟନ ବିଷୟରେ ସମସ୍ତ ସଭ୍ୟମାନଙ୍କୁ ବୁଝାଇଲେ ।

ସେ "ବ୍ଲକ୍ ସିଷ୍ଟମ ଜଳସେଚନ" ବିଷୟରେ କହିଲେ ଯେ ଜଳସେଚନର ସଫଳ ପରିଗ୍ରନ୍ଥନା ହୋଇପାରିଲେ ସମପରିମାଣର ଜଳ ଅଧିକ ଚାଷ ଜମିରେ ଜଳସେଚନ ହୋଇପାରିବ । ଉଦାହରଣ ସ୍ୱରୂପ ଚାଷଜମିକୁ ତିନିଭାଗରେ ବିଭକ୍ତ କରିବାକୁ ପଡ଼ିବ । ପ୍ରଥମ ଭାଗରେ ଅଧିକ ଜଳ ଆବଶ୍ୟକ ହେଉଥିବା ଫସଲ ଯଥା—ଆଖୁ, ଧାନ ଓ ପନିପରିବା ଚାଷ । ଦ୍ୱିତୀୟ ଭାଗରେ ଅଳ୍ପ ଜଳ ଆବଶ୍ୟକ ଫସଲ ଯଥା—ମୁଗ, ବିରି, କୋଳଥ, ମାଣ୍ଡିଆ, ଚିନାବାଦାମ ପ୍ରଭୃତି । ତୃତୀୟ ଭାଗରେ ଶୁଖିଲା ଜମିରେ ଚାଷ ଯଥା—ଶୁଆଁ, ନାଇଜର, ସୂର୍ଯ୍ୟମୁଖୀ, ଚଣା ପ୍ରଭୃତି । ଏହିପରି ତିନିଭାଗ ଚାଷଜମିକୁ ପାଳି ବା ରୋଟେସନ ଦ୍ୱାରା ଜଳ ଯୋଗାଇ ଦେଲେ ଜମିର ଉର୍ବରା ଶକ୍ତି ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଜଳସେଚନରେ ମିତବ୍ୟୟତା ଅବଲମ୍ବନ କରିହୁଏ । ଜମିରେ ବା ପଡ଼ିଆ ଖାଲ ସ୍ଥାନମାନଙ୍କରେ ପାଣି ଜମି ନ ରହିବା ଦ୍ୱାରା ମଶା, ମେଲେରିଆ କମ୍ ହୁଏ । ଏହି ବ୍ଲକ୍ ସିଷ୍ଟମ ଜଳସେଚନ ଦ୍ୱାରା ଅଧିକ ଚାଷ କରିବା ସହିତ ଭଲ ଶସ୍ୟ ଉତ୍ପାଦନ ହୋଇ ଦେଶ ସମୃଦ୍ଧ ହୁଏ ।

ବମ୍ବେ ସରକାର ବ୍ଲକ ସିଷ୍ଟମ ଜଳସେଚନର କାର୍ଯ୍ୟକାରିତା ପାଇଁ ନୀରନଦୀ କେନାଲରେ ପରୀକ୍ଷା ମୂଳକ ଭାବେ ପ୍ରୟୋଗ କରିବା ପାଇଁ ବିଶ୍ୱେଶ୍ୱରୟାଙ୍କୁ କହିଲେ । ବିଶ୍ୱେଶ୍ୱରୟା ଏହାକୁ ବିସ୍ତାର ସହ କାର୍ଯ୍ୟକାରୀ କଲେ । ଏହାର ପ୍ରୟୋଗ କେବଳ କୌଣସି ଇଞ୍ଜିନିୟରଙ୍କ ଦ୍ୱାରା ସମ୍ଭବ ନୁହେଁ । ଏଥିରେ ସର୍ବସାଧାରଣ, ଚାଷୀ ଜମିମାଲିକ ଏବଂ ପ୍ରଶାସନ ସମସ୍ତଙ୍କର ସହଯୋଗ ହେଲେ ଯାଇଁ ଏହା ସଫଳ ଭାବେ କାର୍ଯ୍ୟକାରୀ ହୋଇପାରିବ ।

ସେତେବେଳେ ତତ୍କାଳୀନ ଇଂରେଜୀ କଲେକ୍ଟର ଓ ଆସିଷ୍ଟାଣ୍ଟ କଲେକ୍ଟର ଖୋଲାଖୋଲି ଭାବେ ତାଙ୍କୁ ସହଯୋଗ ନ କରିବା ପାଇଁ କହିଲେ । ସେମାନେ କହିଲେ କୌଣସି ଇଂରେଜ ଲୋକ ଭାରତୀୟ ଅଫିସରଙ୍କର ନିର୍ଦ୍ଦେଶରେ କାମ କଲେ ତାଙ୍କର ସମ୍ମାନ କ୍ଷୁନ୍ନ ହେବ । କିନ୍ତୁ ସେଠାକାର ଡେପୁଟି କଲେକ୍ଟର ଓ ଅନ୍ୟ ଇଞ୍ଜିନିୟରମାନେ ତାଙ୍କୁ ସହଯୋଗ କରିଥିଲେ ମଧ୍ୟ ଉପର ସ୍ତରରେ ତାଙ୍କର ବିରୋଧାଚରଣ କଲେ । ପରିଶେଷରେ ସେ ବମ୍ବେ ସରକାରଙ୍କୁ ସିଧାସଳଖ ଜଣାଇ ଦେଲେ ଯେ ଏହି ଯୋଜନାର ସଫଳ କାର୍ଯ୍ୟ କରିବା ପାଇଁ ବିରୋଧାଚରଣ କରୁଥିବା ଅଫିସରଙ୍କୁ ସେଠାରୁ ତୁରନ୍ତ ବଦଳି କରଯାଉ କିମ୍ବା ତାଙ୍କୁ ଏହି କାର୍ଯ୍ୟରୁ ଅବ୍ୟାହତି ଦିଆଯାଉ ।

ଲର୍ଡ କର୍ଜନ (ଖ୍ରୀ. ୧୮୯୯-୧୯୦୫) ତଦାନୀନ୍ତନ ଭାରତର ଭାଇସରୟ ଏବଂ ଗଭର୍ଣ୍ଣର ଜେନେରାଲ ଥିଲେ । ସେ ସେତେବେଳେ ଭାରତରେ ଅନେକ ସମାଜ

ସଂସାର କାର୍ଯ୍ୟ ହାତକୁ ନେଇଥାନ୍ତି । ସେ ଏକ ଉଚ୍ଚ ଶକ୍ତି ସମ୍ପନ୍ନ ଶକ୍ତି ଆୟୋଗ ନିଯୁକ୍ତ କଲେ । ଏହି ଆୟୋଗ ବା କମିଶନ ତିନିମାସ ମଧ୍ୟରେ ତାଙ୍କୁ ଜଳସେଚନ ଦ୍ୱାରା ଚାଷର କିପରି ଅଧିକରୁ ଅଧିକ ଅଭିବୃଦ୍ଧି ହୋଇପାରିବ ତଥା ଶସ୍ୟ ଉତ୍ପାଦନ ହେବ ରିପୋର୍ଟ ଦେବାକୁ କହିଲେ ।

ବିଶ୍ୱେଶ୍ୱରୟା ନିର୍ଦ୍ଦିଷ୍ଟ ତିନିମାସ ମଧ୍ୟରେ "ବ୍ଲକ ସିଷ୍ଟମ ଜଳସେଚନ" ବିଷୟରେ ଏକ ରିପୋର୍ଟ ଦେଇଥିଲେ । ଶକ୍ତି ଆୟୋଗ ନିକଟରେ ସେ ନିଜେ ଉପସ୍ଥିତ ରହି ଦୀର୍ଘ ତିନିଦିନ ପର୍ଯ୍ୟନ୍ତ ସେମାନଙ୍କୁ ସେ ଅବଗତ କରାଇଥିଲେ ଏବଂ ସେମାନଙ୍କର ସମସ୍ତ ପ୍ରଶ୍ନର ଉତ୍ତର ଦେଇଥିଲେ । ପରିଶେଷରେ ଆୟୋଗ ହୃଦୟଙ୍ଗମ କଲେ ଯେ ଏହା ଏକ ପୂର୍ଣ୍ଣାଙ୍ଗ ଯୋଜନା ଏବଂ ଏହା ସମଗ୍ର ଦାକ୍ଷିଣାତ୍ୟ ପାଇଁ ଉପଯୋଗୀ ।

ବ୍ଲକ ଜଳସେଚନ ପଦ୍ଧତିର ଉଚ୍ଚ ପ୍ରଶଂସା କରି ବିଶ୍ୱେଶ୍ୱରୟାଙ୍କୁ ଏହାର ଉପଯୋଗ କରିବା ପାଇଁ ଆୟୋଗ ଅନୁମତି ପ୍ରଦାନ କଲେ । ଏହାକୁ କାର୍ଯ୍ୟକାରୀ କରିବା ପାଇଁ ସମସ୍ତ ପ୍ରତିବନ୍ଧକ ଉଠାଇବାର ବ୍ୟବସ୍ଥା କଲେ । ଯେଉଁ ଯେଉଁ କର୍ମଚାରୀ ଅସହଯୋଗ କରିବେ ସେମାନଙ୍କୁ ବଦଳି କରାଯିବା ସହିତ ଅନ୍ୟମାନଙ୍କୁ ପୂର୍ଣ୍ଣ ସହଯୋଗ କରିବାକୁ କୁହାଗଲା । ଶେଷରେ ବିଶ୍ୱେଶ୍ୱରୟାଙ୍କ ନିର୍ଦ୍ଦେଶରେ ସମସ୍ତେ କାର୍ଯ୍ୟ କରିବାକୁ ଆଗେଇ ଆସିଲେ ଏବଂ ଏହି ପଦ୍ଧତି ସଫଳତା ହାସଲ କଲା ।

ବିଶ୍ୱେଶ୍ୱରୟା ବଡ଼ ବଡ଼ ଜମିଦାରମାନଙ୍କୁ ଡ଼କାଇ ବ୍ଲକ ଜଳସେଚନ ପଦ୍ଧତି ବିଷୟରେ ବୁଝାଇଲେ ଏବଂ ସେମାନଙ୍କୁ ଅନୁରୋଧ କଲେ ଏହାର ଉପଯୋଗ କରିବା ପାଇଁ । ସେ କହିଲେ ଯେ ଏହା ପ୍ରଥମେ ପରୀକ୍ଷା ମୂଳକ ଭାବେ ଆରମ୍ଭ କରାଯାଉ, ଯଦି ସେମାନେ କୃତକାର୍ଯ୍ୟ ନହେବେ ତାହାହେଲେ ସରକାର ଏହାର ଉପଯୁକ୍ତ କ୍ଷତିପୂରଣ ଦେବ । ତାହାହିଁ ହେଲା । ବଡ଼ ଚାଷୀମାନେ ବ୍ଲକ ଜଳସେଚନ ପଦ୍ଧତି ଅନୁସରଣ କରି ଉପକୃତ ହେଲେ; ଉତ୍ତମ ଫସଲ ଆମଦାନୀ ହେବା ସହିତ ଜମିର ଉର୍ବରା ଶକ୍ତି ବଜାୟ ରହିଲା ଏବଂ ଜଳର ଅପଚୟ ରୋକାଯାଇ ପାରିଲା ।

ବଡ଼ ବଡ଼ ଚାଷୀଙ୍କ ଦେଖାଦେଖି ଛୋଟ ଛୋଟ ଚାଷୀ ମଧ୍ୟ ଏହି ବ୍ଲକ ଜଳସେଚନ ପଦ୍ଧତି ଅନୁସରଣ କଲେ । ଉକ୍ତ ଯୋଜନାର ସଫଳତା ପରେ ଉଭୟ ଭାରତୀୟ ଏବଂ ଇଂରେଜଙ୍କ ମଧ୍ୟରେ ବିଶ୍ୱେଶ୍ୱରୟାଙ୍କ ସମ୍ମାନ ବହୁଗୁଣରେ ବଢ଼ିଗଲା । ଏହି ବ୍ଲକ ଜଳସେଚନ ପଦ୍ଧତି ପାଇଁ ସମଗ୍ର ପୃଥିବୀରେ ତାଙ୍କର ସୁନାମ ପ୍ରଚାରିତ ହେଲା ।

ସେଥିପାଇଁ ବିଧାନସଭାରେ ବମ୍ବେ ସରକାରଙ୍କର ଜଣେ ବରିଷ୍ଠ ସଭ୍ୟ, ସାର୍ ଜନ୍ ମୁର୍ ମ୍ୟାକେନଜୀ ବିଶ୍ୱେଶ୍ୱରୟାଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳୀ ଦେଇ କହିଥିଲେ, "Visvesvaraya, certainly one of the ablest officers, European or Indian, of the P.W.D. with whom it has been my pleasure and honour to work".

"ବିଶ୍ୱେଶ୍ୱରୟା ନିର୍ଣ୍ଣିତ ଭାବରେ ଜଣେ ଉଚ୍ଚକୋଟୀର ଦକ୍ଷ ଅଫିସରମାନଙ୍କ ମଧ୍ୟରୁ ଜଣେ, ସେ ଇଉରୋପୀୟ ହୁଅନ୍ତୁ କିମ୍ବା ଭାରତୀୟ ହୁଅନ୍ତୁ, ସେହି ପୂର୍ତ୍ତ ବିଭାଗୀୟ ଅଫିସରଙ୍କ ସହିତ ମୋତେ ସମ୍ମାନ ସହିତ କାର୍ଯ୍ୟ କରିବାର ସୁଯୋଗ ମିଳିଥିଲା ।"

ଭାରତର ପୁରପଲ୍ଲୀରେ ବର୍ତ୍ତମାନ ଏହି ପଦ୍ଧତି ଅନୁସରଣ କରାଯାଇ ଜଳସେଚନ କରାଯାଉଛି ।

—*—

## ପଞ୍ଚମ ପରିଚ୍ଛେଦ :

# ଏଡେନ୍ ସହରରେ କାର୍ଯ୍ୟକ୍ରମ

୧୯୦୪ ମସିହାରେ ବିଶ୍ୱେଶ୍ୱରୟାଙ୍କର ଦକ୍ଷତା ଏବଂ ସାଧୁତା ଯୋଗୁଁ ବମ୍ବେ ସରକାର ତାଙ୍କୁ ସାନିଟାରୀ ଇଞ୍ଜିନିୟର ଭବେ ବମ୍ବେରେ ଅବସ୍ଥାପିତ କଲେ । ସେତେବେଳେ ଉଚ୍ଚ ପଦ ପଦବୀ ସବୁ ଇଂରେଜ ଲୋକମାନେ ପାଉଥିଲେ । ବମ୍ବେ ସରକାରଙ୍କର ସାନିଟାରୀ ଇଞ୍ଜିନିୟର ପରି ଏକ ସଂରକ୍ଷିତ ପଦବୀ କେବଳ ବିଶ୍ୱେଶ୍ୱରୟାଙ୍କ କାର୍ଯ୍ୟଦକ୍ଷତା ପାଇଁ ସମ୍ଭବ ହେଲା ।

ବମ୍ବେ ସରକାରଙ୍କ ଅଧୀନରେ ସେତେବେଳେ ଏଡ଼େନ ବନ୍ଦରଟିର ରକ୍ଷଣାବେକ୍ଷଣ ଦାୟିତ୍ୱ ନ୍ୟସ୍ତଥାଏ । ଏଡ଼େନ ସହରଟି ଲୋହିତ ସାଗର ଉତ୍ତର ଉପକୂଳରେ ଅବସ୍ଥିତ । ଏହା ବ୍ରିଟିଶ ସାମ୍ରାଜ୍ୟର ଏକ ସାମରିକ ନୌଘାଟି । ଭାରତରୁ ସୁଏଜକେନାଲ ବାଟେ ଭୂମଧ୍ୟସାଗର ଏବଂ ଜିବ୍ରାଲିଟର ଦେଇ ଇଂଲଣ୍ଡ ଗଲେ ପ୍ରଥମେ ଏହି ସାମୁଦ୍ରିକ ବନ୍ଦର ପଡ଼ିବ । ଏହି ବନ୍ଦର ବାଟଦେଇ ଜାହାଜ ଯାଇ ନପାରିଲେ ଏହା ବୁଲି ବୁଲି ଉତ୍ତମାଶା ଅନ୍ତରୀପ (Cape of Good Hope) ଦେଇ କେପ୍ ଟାଉନକୁ ଯିବ । ସେଠାରୁ ପୁଣି ଜିବ୍ରାଲିଟର ଦେଇ ଇଂଲଣ୍ଡରେ ପହଞ୍ଚିବ । ତେଣୁ ଇଂରେଜମାନଙ୍କୁ ସୁଏଜ କେନାଲକୁ ମୁକ୍ତ ରଖିବାକୁ ହେଲେ ଏଡ଼େନ ସହରକୁ ବିଶିଷ୍ଟ ସାମୁଦ୍ରିକ କେନ୍ଦ୍ରର ମର୍ଯ୍ୟାଦା ଦେବାକୁ ପଡ଼ିବ । ଏଠାରେ ସାମରିକ ଓ ବେସାମରିକ ବର୍ତ୍ତମାନଙ୍କୁ ଜଳଯୋଗାଣ ବମ୍ବେ ସରକାରଙ୍କର ଏକ ନୈତିକ କର୍ତ୍ତବ୍ୟ । କିନ୍ତୁ ଏଡ଼େନ ସାମରିକ ଘାଟିର ସମସ୍ତ ସାମରିକ ଉପକରଣ ଯୋଗାଣ ଇଂଲଣ୍ଡ ସରକାରଙ୍କର ଦାୟିତ୍ୱ ।

ସେହି ସମୟରେ ବେସାମରିକ ଲୋକମାନଙ୍କୁ ୟୁରୋପ ଓ ପାଶ୍ଚାତ୍ୟ ଦେଶମାନଙ୍କୁ ଯିବାକୁ ହେଲେ କେବଳ ନୌ-ଜାହାଜର ବ୍ୟବସ୍ଥା ଥିଲା ଏବଂ ଜାହାଜ ଏହି ଏଡ଼େନ ବନ୍ଦର ବାଟେ ସୁଏଜ କେନାଲ ଦେଇ ଯାଉଥିଲା । ଏଡ଼େନ ବନ୍ଦରର ଗୁରୁତର ସମସ୍ୟା ହେଲା ଉତ୍କଟ ଜଳାଭାବ । ଉକ୍ତ ବନ୍ଦର ମରୁଭୂମି ଦ୍ୱାରା ପରିବେଷ୍ଟିତ । ନିକଟରେ କୌଣସି ଝରଣା ବା ନଦୀ ନଥିଲା । ନଳକୂପ ବା କୂପ ଦ୍ୱାରା ମାଟିତଳୁ ଯେଉଁ ଜଳ ଉଠା ହେଉଥିଲା ତାହା ବନ୍ଦର ଅଞ୍ଚଳ ପାଇଁ ଯଥେଷ୍ଟ ନଥିଲା । ସାମରିକ ଲୋକମାନଙ୍କୁ ସମୁଦ୍ରର ଲୁଣାଜଳକୁ ବିଶୁଦ୍ଧ କରି ଗ୍ୟାଲନ ତିନି ଟଙ୍କାରେ ଯୋଗାଇ ଦିଆଯାଉଥିଲା । ଚମଡ଼ା ବ୍ୟାଗରେ ବହୁଦୂରରୁ ଖଚର ସାହାଯ୍ୟରେ ଖାରିଆ ପାଣି ବହନ କରି ତାର ଅଧାଦାମରେ ବିକ୍ରି ହେଉଥିଲା । ବାର୍ଷିକ ହାରାହାରି ସାତଲକ୍ଷ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ହେଉଥିଲା । ବ୍ରିଟିଶ ସରକାର

ଭରତ ସରକାରଙ୍କୁ ଲେଖିଲେ ଯେ ଏଡ଼େନ ସହର ପାଇଁ ପ୍ରଚୁର ଜଳଯୋଗାଣର ବ୍ୟବସ୍ଥା ତୁରନ୍ତ କରଯାଉ ।

ଭରତ ସରକାର ଏହାର ସମାଧାନ କରିବା ପାଇଁ ବମ୍ବେ ସରକାରଙ୍କୁ ନିର୍ଦ୍ଦେଶ ଦେଲେ । ବମ୍ବେ ସରକାର ଏଡ଼େନ ବନ୍ଦରର ଅଞ୍ଚଳ ପାଇଁ ପ୍ରଚୁର ପରିମାଣର ଜଳ ବ୍ୟବସ୍ଥା କରିବାକୁ ବିଶ୍ୱେଶ୍ୱରୟାଙ୍କୁ ଦାୟିତ୍ୱ ଦେଲେ । ତାଙ୍କୁ ତୁରନ୍ତ ଏଡ଼େନ ପରିଦର୍ଶନରେ ଯାଇ ଜଳଯୋଗାଣ ସମ୍ପର୍କରେ ଏକ ନୂତନ ଯୋଜନା ପ୍ରସ୍ତୁତ କରିବାକୁ ଅନୁରୋଧ କରଗଲା ।

୧୯୦୬ ମସିହାରେ ବିଶ୍ୱେଶ୍ୱରୟା ଏଡ଼େନ ପରିଦର୍ଶନରେ ଗଲେ । ସେ ସେଠାରେ ବିଭିନ୍ନ ଅଞ୍ଚଳ ସର୍ବେକ୍ଷଣ କଲେ । ଏଡ଼େନର ଚାରିପାର୍ଶ୍ୱରେ ଦୀର୍ଘ ୯୮ କିଲୋମିଟର ଅଞ୍ଚଳ ପର୍ଯ୍ୟନ୍ତ ପାର୍ବତ୍ୟ ଭୂମି; ବର୍ଷା ବିଶେଷ ହୁଏ ନାହିଁ । ବର୍ଷା ହେଲେ ତାର ଜଳ ଛୋଟ ଛୋଟ ଧାରରେ ନିମ୍ନକୁ ବହିଆସେ ଏବଂ ଏଡ଼େନଠାରୁ ୨୯ କିଲୋମିଟର ଦୂର ଲହେକ୍‌ସ ନିକଟରେ ବାଲିଆ ମାଟିରେ ଶୋଷି ହୋଇଯାଏ । ସେ ଲହେକ୍‌ସ ନିକଟରେ କେତେଗୁଡ଼ିଏ ପରୀକ୍ଷଣ କୂପ ଖୋଳାଇଲେ । କୂପରେ ସେକେଣ୍ଡରେ କେତେ ଜଳ ମିଳିପାରିବ ତାର କଳନା କଲେ । ଭୂମିତଳେ ପାଇପ ଲାଇନ ବିଛାଇବା ପାଇଁ ସମ୍ପୂର୍ଣ୍ଣ ସର୍ବେକ୍ଷଣ ଶେଷ କଲେ ।

ବିଶ୍ୱେଶ୍ୱରୟା ବିଭିନ୍ନ ରିପୋର୍ଟ ଅନୁଧ୍ୟାନ କଲେ ଏବଂ ସର୍ବେକ୍ଷଣ ଓ ବିଭିନ୍ନ ଦିଗରେ ଅନୁସନ୍ଧାନ ପରେ ଏକ ସାମୂହିକ ରିପୋର୍ଟ ପ୍ରସ୍ତୁତ କଲେ । ସେ ରିପୋର୍ଟରେ ଦର୍ଶାଇଲେ ଯେ ଲହେକ୍‌ସ ନିକଟରେ ବୃହଦାକାର ଗୋଲେଇ ଏକ କୂପ ଖୋଳି ସେଠାରୁ ଜଳକୁ ପମ୍ପ ସାହାଯ୍ୟରେ ପାହାଡ଼ର ଏକ ଉଚ୍ଚ ସ୍ଥାନରେ ଅବସ୍ଥିତ ବଡ଼ ଟାଙ୍କିରେ ପକାଇ ଏକ ଜଳଭଣ୍ଡାର କରିବାକୁ ହେବ । ସେଠାରୁ ପାଇପ୍ ସାହାଯ୍ୟରେ ଏଡ଼େନ ସହରକୁ ଜଳ ଯୋଗାଇ ଦିଆଯିବ ।

ଲହେକ୍‌ସ ଅଞ୍ଚଳ ହେଉଛି ସେହି ଅଞ୍ଚଳର ଏକ ଜନଜାତି ଅଧ୍ୟୁଷିତ ସୁଲତାନଙ୍କର । ଏଡ଼େନ ସହରକୁ ଜଳଯୋଗାଣର ଦୀର୍ଘକାଳୀନ ସ୍ଥାୟୀ ବ୍ୟବସ୍ଥା କରିବାକୁ ହେଲେ ସେହି ସୁଲତାନଙ୍କ ସଙ୍ଗେ ଏକ ଦୀର୍ଘ ମିଆଦୀ ଚୁକ୍ତି କରିବାକୁ ହେବ । ବ୍ରିଟିଶ ସରକାର ଚାହିଁଲେ ଏହି ଯୋଜନା ଅତି ସ୍ୱଳ୍ପ ଖର୍ଚ୍ଚରେ କାର୍ଯ୍ୟକାରୀ ହୋଇପାରିବ । ବିଶ୍ୱେଶ୍ୱରୟାଙ୍କର ସୁଦୂରପ୍ରସାରୀ ଦୃଷ୍ଟିକୋଣ ପାଇଁ ବ୍ରିଟିଶ ସରକାର ଓ ସୁଲତାନଙ୍କ ସଙ୍ଗେ ଦୀର୍ଘ ମିଆଦୀ ଚୁକ୍ତି ସମ୍ଭବ ହେଲା । ବ୍ରିଟିଶ ସରକାର ତାଙ୍କ ଦୂରଦୃଷ୍ଟିର ଉଚ୍ଚ ପ୍ରଶଂସା କଲେ ।

ବିଶ୍ୱେଶ୍ୱରୟା ତାଙ୍କର ସାମୂହିକ ରିପୋର୍ଟରେ ଦର୍ଶାଇଥିବା ଅନ୍ୟ ଏକ ଦିଗର ବିସ୍ତୃତ ବିବରଣୀ ଉଲ୍ଲେଖଯୋଗ୍ୟ । ସେ ଏଡ଼େନ ସହିତ ଅନ୍ୟ କେତେକ ସହର ତୁଳନା କରି ଏକ ଟିପ୍‌ପଣୀରେ ଦର୍ଶାଇଥିଲେ ଯେ, ଯେଉଁ ସହରରେ ଭୂପୃଷ୍ଠକୁ

ଶୁଷ ରଖିବା ପାଇଁ ଭୂତଳ ଜଳ ନିକାସର ଯେତେ ସୁବିଧା କରଯାଇଅଛି, ସେହି ସହରର ମୃତ୍ୟୁର ହାର ସେତେ କମ୍ । ସେ ଦର୍ଶାଇଲେ ପ୍ରତି ହଜାର ଲୋକସଂଖ୍ୟା ପ୍ରତି ମୃତ୍ୟୁହାର ଶେଖ୍‌ଓଟ୍‌ମାନରେ ୧୨୨, ଇଂଲଣ୍ଡରେ ୧୮, ଓ୍ୱେଲ୍‌ସରେ ୧୮ ଓ ବମ୍ବେରେ ୪୦ । ଏହି ପରିପ୍ରେକ୍ଷୀରେ ଜଳଯୋଗାଣ ସହ ଏଡ଼େନରେ ଭୂତଳ ଜଳ ନିକାସ ଅତ୍ୟନ୍ତ ଜରୁରୀ ।

ଇଂରେଜ କର୍ତ୍ତୃପକ୍ଷ ତନ୍ନ ତନ୍ନ କରି ଏହି ଯୋଜନାର ରିପୋର୍ଟ ପଢ଼ି ଏହା କାର୍ଯ୍ୟକାରୀ ହୋଇପାରିବ କି ନାହିଁ ବିଶ୍ୱାସ କରିପାରିଲେ ନାହିଁ । ମାତ୍ର ପରିଶେଷରେ ସେମାନେ ଏହି ଯୋଜନାକୁ ଅନୁମୋଦନ କଲେ । ଉକ୍ତ ଯୋଜନା କାର୍ଯ୍ୟକାରୀ ହେବା ପରେ ଏଡ଼େନ ସହରର ଜଳାଭବ ଦୂର ହୋଇଗଲା ।

ଏହି ଯୋଜନାର ସଫଳତା ପରେ ଉଭୟ ଭାରତୀୟ ଓ ଇଂରେଜଙ୍କ ମଧ୍ୟରେ ବିଶ୍ୱେଶ୍ୱରୟାଙ୍କ ସମ୍ମାନ ବହୁଗୁଣରେ ବଢ଼ିଗଲା । ଏହି ସହରର ଜଳଯୋଗାଣ ଓ ନାଳ ନର୍ଦ୍ଦମାର ବ୍ୟବସ୍ଥା ପାଇଁ ସେ ଯେଉଁ ମୂଲ୍ୟବାନ ପରାମର୍ଶ ଯୋଗାଇ ଦେଇଥିଲେ, ତାର ପୁରସ୍କାର ସ୍ୱରୂପ ତାଙ୍କୁ ସମ୍ମାନ ସୂଚକ "କଇସର-ଇ-ହିନ୍ଦ୍" ମେଡ଼ାଲ ମିଳିଥିଲା ।



ଷଷ୍ଠ ପରିଚ୍ଛେଦ :

# ଇସ୍ତଫା

୧୯୦୭ ମସିହାରେ ବିଶ୍ୱେଶ୍ୱରୟା ବମ୍ବେର ଚିଫ୍ ସାନିଟାରୀ ଇଞ୍ଜିନିୟର ହେଲେ ଏବଂ ଅନ୍ୟ ଦୁଇସ୍ଥାନରେ ମଧ୍ଯ ମୁଖ୍ୟ ସାନିଟାରୀ ଇଞ୍ଜିନିୟର ଦାୟିତ୍ୱରେ ରହିଲେ । ସେ ଦୁଇଟି ଅଫିସରୁ ଗୋଟିଏ ବେଲଗାଁଓରେ ଅନ୍ୟଟି ପୁନାଠାରେ ଥିଲା । ଏଡ଼େନ ସହରର ଜଳଯୋଗାଣ ଓ ନାଳ ନର୍ଦ୍ଦମା ଯୋଜନାର ସଫଳ ରୂପାୟନ ପରେ ବିଶ୍ୱେଶ୍ୱରୟାଙ୍କ ନାମ ଦେଶ ବିଦେଶରେ ପ୍ରଚାରିତ ହୋଇଗଲା । ସେ ଅନ୍ୟାନ୍ୟ ଯୋଜନା ମଧ୍ୟରେ ପୁନା, ଧରଓ୍ୱାର ଏବଂ ବିଜାପୁର ସହର ପାଇଁ ଜଳ ଯୋଗାଣର ଯୋଜନା ପ୍ରସ୍ତୁତ କରିଥିଲେ ।

ଜଳ ଯୋଗାଣ ଯୋଜନାରେ ବିଶ୍ୱେଶ୍ୱରୟାଙ୍କ ସୁନାମ ଏପରି ପ୍ରସାରିତ ହେଲା ଯେ ଯେକୌଣସି ଯୋଜନା ତାଙ୍କର ସୁପାରିଶ ବିନା ଗୃହୀତ ହୋଇପାରୁ ନଥିଲା । ଲର୍ଡ ସିଡ଼େନହାମଙ୍କର ବିଶ୍ୱେଶ୍ୱରୟାଙ୍କ ଉପରେ ଏପରି ବିଶ୍ୱାସ ଥିଲା ଯେ, ଅହମଦାବାଦ ପୌର ପରିଷଦ ଦ୍ୱାରା ପ୍ରସ୍ତାବିତ ଅହମଦାବାଦ ସହରର ଜଳଯୋଗାଣ ଯୋଜନା ଅନୁମୋଦନ କରିବା ପୂର୍ବରୁ ବିଶ୍ୱେଶ୍ୱରୟାଙ୍କର ମତାମତ ଅଣାଯିବା ଉପରେ ଗୁରୁତ୍ୱ ଦିଆଗଲା । ଲର୍ଡ ସିଡ଼େନହାମ୍‌ଙ୍କ ମତରେ, "The most talented and experienced engineer, Visvesvaraya, who would be able to give them admirable advice in regard to water supply and its administration."

କୋହ୍ଲାପୁର ଏକ ହିନ୍ଦୁ ରାଜ୍ୟ । ସେଠାରେ ଥିବା ମହାଲକ୍ଷ୍ମୀ ମନ୍ଦିର ଭାରତ ବିଖ୍ୟାତ । କୋହ୍ଲାପୁର ସହରକୁ ଜଳଯୋଗାଣ ହେଉଥାଏ ସେଠାରେ ଥିବା ବିଶାଳ ପୁଷ୍କରିଣୀରୁ । ଏହି ପୁଷ୍କରିଣୀଟି ଏକ କୃତ୍ରିମ ହ୍ରଦ ସ୍ୱରୂପ । ଏହାର ବନ୍ଧଟି ମାଟି ଗୋଡ଼ି ପଙ୍କରେ ନିର୍ମିତ । ଥରେ ଘଡ଼ିଆ ପଡ଼ି ମାଟିବନ୍ଧଟି କିଛିଅଂଶ ଭାଙ୍ଗିଗଲା । କୋହ୍ଲାପୁର ସହର ଉପରେ ହ୍ରଦଜଳ ବନ୍ୟା ସୃଷ୍ଟି କରିବାର ଆଶଙ୍କା ଦେଖାଦେଲା । ସହରକୁ କିପରି ରକ୍ଷା କରାଯିବ ତାହା ସରକାରଙ୍କର ଏକ ବିରାଟ ସମସ୍ୟା ହେଲା । ଏହାଠାରୁ ବଡ଼ ସମସ୍ୟା ହେଲା ସହରକୁ ପିଇବା ପାଣିର ଘୋର ଅଭାବ ମେଣ୍ଟାଇବା ।

ବ୍ରିଟିଶ ସରକାରଙ୍କ ତରଫରୁ କର୍ଣ୍ଣେଲ ଫେରିସ୍ ଜଣେ, ଅଭିଜ୍ଞ ୟୁରୋପିୟାନ ଇଞ୍ଜିନିୟର ପଠାଇବା ପାଇଁ ଏକ ଜରୁରୀ ଟେଲିଗ୍ରାମ ବାର୍ତ୍ତାରେ ବମ୍ବେ ସରକାରଙ୍କୁ ଅନୁରୋଧ କଲେ । ସେ ଲେଖିଥିଲେ ଯେ ସେହି ୟୁରୋପିୟାନ

ଇଞ୍ଜିନିୟରଙ୍କର ଜଳଯୋଗାଣ ଏବଂ ମାଟିବନ୍ଧ ନିର୍ମାଣରେ ସମ୍ପୂର୍ଣ୍ଣ ଅଭିଜ୍ଞତା ଥିବ ଏବଂ ସେ ତୁରନ୍ତ କାର୍ଯ୍ୟଟି ଆରମ୍ଭ କରି ଯୁଦ୍ଧକାଳୀନ ଭିତ୍ତିରେ ମରାମତି କାର୍ଯ୍ୟଟି ସମ୍ପୂର୍ଣ୍ଣ କରିପାରିବେ । କର୍ଣ୍ଣେଲ ଫେରିସ୍ କହିଥିଲେ, ' There is no dearth of advisers who will advise as to how the repair should be carried out. All the educated need not necessarily be intelligent or practical. But there is a dearth for intelligent, thoughtful people.''

ବମ୍ବେ ସରକାରଙ୍କ ଅଧୀନରେ ଅନେକ ୟୁରୋପିୟାନ ଇଞ୍ଜିନିୟର ଥିଲେ ମଧ୍ୟ ସରକାର ବିଶ୍ୱେଶ୍ୱରୟାଙ୍କୁ ସେହି ଜଳଭଣ୍ଡାରର ମରାମତି କରିବା ଦାୟିତ୍ୱ ଦେଲେ । ବିଶ୍ୱେଶ୍ୱରୟା ତୁରନ୍ତ କୋହ୍ଲାପୁର ଯାଇ ବନ୍ଧର ଅବସ୍ଥା ତନ୍ନ ତନ୍ନ କରି ପରୀକ୍ଷା କଲେ । ଜଳର ପରିମାଣ ଏବଂ ଏହା ଗୋଳିଆ ବା ନିର୍ମଳ ଜଳ କେଉଁ ସ୍ତରରୁ ବାହାରୁଛି ଇତ୍ୟାଦିର ହିସାବ ରଖିଲେ । କୋହ୍ଲାପୁର ଦରବାରରୁ ଜଳଭଣ୍ଡାର ସମ୍ବନ୍ଧୀୟ ଅନ୍ୟାନ୍ୟ ତଥ୍ୟ ସଂଗ୍ରହ କଲେ । ବନ୍ଧର ମୂଳଭିତ୍ତିଠାରୁ ଶୀର୍ଷଭାଗ ପର୍ଯ୍ୟନ୍ତ ସର୍ବେକ୍ଷଣ କରି ଏକ ତଥ୍ୟଭିତ୍ତିକ ବିସ୍ତୃତ ଯୋଜନା ପ୍ରସ୍ତୁତ କରି ସରକାରଙ୍କୁ ଦେଲେ । ଏହି ଯୋଜନା କାର୍ଯ୍ୟକାରୀ ହେଲେ ବନ୍ଧଟିର ମରାମତି ଓ ପୁନଃସ୍ଥାପନ ହେବାସହ ତାହା ପୂର୍ବ ତୁଳନାରେ ଅଧିକ ସୁଦୃଢ଼ ହେବ ।

ଏହି ଯୋଜନାଟି ସରକାରଙ୍କ ଦ୍ୱାରା ଅନୁମୋଦିତ ହୋଇ ତୁରନ୍ତ ଅର୍ଥ ମଞ୍ଜୁର ହେଲା । ବିଶ୍ୱେଶ୍ୱରୟା ସଙ୍ଗେ ସଙ୍ଗେ ମରାମତି କାର୍ଯ୍ୟ ଆରମ୍ଭ କରିବା ପାଇଁ ସେଠାରେ ଅବସ୍ଥାପିତ ହୋଇଥିବା ସମସ୍ତ ଯନ୍ତ୍ରୀମାନଙ୍କୁ ନିର୍ଦ୍ଦେଶ ଦେଲେ । ସେମାନେ ବିଶ୍ୱେଶ୍ୱରୟାଙ୍କ ପ୍ରସ୍ତାବ ଅନୁସାରେ ତାଙ୍କର ରେଖାଙ୍କିତ ନକ୍ସାର କୌଣସି ପରିବର୍ତ୍ତନ ନକରି ମରାମତି କାର୍ଯ୍ୟରେ ଆଗେଇଲେ । ଏହି କାର୍ଯ୍ୟ ଚାଲିବା ବେଳେ ବିଶ୍ୱେଶ୍ୱରୟା ତିନି ଚାରିଥର କୋହ୍ଲାପୁର ଯାଇ ମରାମତି କାର୍ଯ୍ୟର ତଦାରଖ କରିଥିଲେ । ନିର୍ଦ୍ଦିଷ୍ଟ ସମୟରେ ନିର୍ଦ୍ଧାରିତ ଅଟକଳରେ ମରାମତି ଓ ପୁନଃସ୍ଥାପନ କାର୍ଯ୍ୟ ସଫଳତାର ସହ ସମ୍ପନ୍ନ ହେଲା । ଏହାଫଳରେ ଜଳଭଣ୍ଡାରର ବନ୍ଧଟି ମଜଭୁତ ହେବା ସଙ୍ଗେ ସଙ୍ଗେ ପୂର୍ବ ତୁଳନାରେ ସ୍ଥାୟୀ ଏବଂ ସୁଦୃଢ଼ ହେଲା ।

ତା'ପର ବର୍ଷ ବର୍ଷାଦିନେ ଆଶାତୀତ ଭାବରେ ପ୍ରବଳରୁ ଅତି ପ୍ରବଳ ବୃଷ୍ଟିପାତ ହେଲା । ଜଳ ଭଣ୍ଡାର ଉଚ୍ଛୁଳି ପଡ଼ିଲେ ମଧ୍ୟ ତାର ଆଡ଼ିବନ୍ଧ ସବୁ ସୁଦୃଢ଼ ରହିଥାଏ । ଏହି ଫଳାଫଳ ଉପରେ କୋହ୍ଲାପୁରର ମହାରାଜା ଏପରି ଖୁସୀ ହୋଇଗଲେ ଯେ, ଦରବାର ତରଫରୁ ଅଭିଜ୍ଞ ପ୍ରତିଭାବନ୍ତ ବିଶ୍ୱେଶ୍ୱରୟାଙ୍କୁ ଅଭିନନ୍ଦନ ଜଣାଇ ଦିଆଗଲା ।

ନିଜର ଇଞ୍ଜିନିୟରିଂ କୌଶଳ ଓ କାର୍ଯ୍ୟଦକ୍ଷତା ଦେଖାଇ ବ୍ରିଟିଶ ସରକାରଙ୍କ ପକ୍ଷରୁ ବିଶ୍ୱେଶ୍ୱରୟା ସାର୍ ଉପାଧିରେ ଭୂଷିତ ହୋଇଥିଲେ । ସେ

ସମସ୍ତଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ର ହେଲେ ମଧ୍ୟ ବମ୍ବେ ପ୍ରଦେଶର ଚିଫ୍ ଇଞ୍ଜିନିୟର ହୋଇ ପାରିଲେ ନାହିଁ । ତାଙ୍କର ଏକମାତ୍ର ଦୋଷ ଥିଲା ସେ ପରାଧୀନ ଭାରତର ଜଣେ ନାଗରିକ । ସେତେବେଳେ ଅନେକ ଉଚ୍ଚ ପଦ ପଦବୀ ଗୋରା ଲୋକମାନଙ୍କ ପାଇଁ ସଂରକ୍ଷିତ ଥିଲା । ତନ୍ମଧ୍ୟରୁ ଚିଫ୍ ଇଞ୍ଜିନିୟର ପଦ ଥିଲା ଅନ୍ୟତମ ।

ସେତେବେଳେ ଦେଶର ଅବସ୍ଥା ଭଲ ନଥିଲା । ୧୯୦୭ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ସୁରଟ ଅଧିବେଶନରେ କଂଗ୍ରେସ ଦୁଇଭାଗ ହୋଇଗଲା । ଗୋଟିଏ ଦଳ ଉଦାରପନ୍ଥୀ ଓ ଅନ୍ୟଦଳଟି ଚରମପନ୍ଥୀ । ଲୋକମାନ୍ୟ ବାଳ ଗଙ୍ଗାଧର ତିଳକଙ୍କୁ ଦ୍ୱିତୀୟ ଦଳଭୁକ୍ତ କରାଯାଇଥିଲା ଏବଂ ପ୍ରଥମ ଦଳର ନେତା ଥିଲେ ଗୋପାଳ କୃଷ୍ଣ ଗୋଖିଲେ । ଉଭୟେ ମହାରାଷ୍ଟ୍ର ବ୍ରାହ୍ମଣ ପରିବାରର । ପୁନା ଥିଲା ବିଦେଶୀ ପଦାର୍ଥ/ଦ୍ରବ୍ୟ ବର୍ଜନ ଓ ସ୍ୱଦେଶୀ ଆନ୍ଦୋଳନର ପ୍ରାଣକେନ୍ଦ୍ର ।

ଅରବିନ୍ଦ ଘୋଷ (ପଣ୍ଡିଚେରୀ ଆଶ୍ରମର ଶ୍ରୀଅରବିନ୍ଦ) ବରୋଦାରେ ପ୍ରଥମେ ପ୍ରଶାସକ, ପରେ ଅଧ୍ୟାପକ, ଶେଷରେ ପ୍ରଫେସର ହୋଇ ଚାକିରିରୁ ଇସ୍ତଫା ଦେଲେ । ସେ ସେଠାରେ ଦୀର୍ଘ ୧୩ ବର୍ଷ ଚାକିରି କରି ବରୋଦାର ମହାରାଜା ସାୟାଜୀ ରାଓ ଗାଇକଓ୍ୱାଡ଼ଙ୍କର ପ୍ରିୟପାତ୍ର ହୋଇଥିଲେ । ସେ ସ୍ୱଦେଶୀ ଆନ୍ଦୋଳନର ଜଣେ ପ୍ରବକ୍ତା ଥିଲେ । ସେ ସେଠାରୁ ଆସି କଲିକତାଠାରେ "ବନ୍ଦେ ମାତରମ" ନାମକ ପତ୍ରିକାର ସମ୍ପାଦକ ହେଲେ । ଯୁବ ବିପ୍ଳବୀ ନେତା ଅରବିନ୍ଦ ଘୋଷ ଏହି ନିର୍ଭିକ ଜାତୀୟତାବାଦୀ ପତ୍ରିକାରେ ସ୍ୱଦେଶୀ ଆନ୍ଦୋଳନକୁ ତୀବ୍ର କରିବା ପାଇଁ ଡ଼ାକରା ଦେଇଥିଲେ । ସେ ଲେଖିଥିଲେ, "India must have Swaraj inorder to live; she must have Swaraj in order to live well and happily; she must have swaraj in order to live for the world, not as a slave for the material and political benefit of a single purse - proud selfish nation, but as a free people for the spiritual and intellectual benefit of the human race".

ଖୁଦୀରାମ କଲିକତାର ମୁଜାଫରପୁର ନିକଟରେ ବୋମା ବିସ୍ଫୋରଣ ଘଟାଇବା କାରଣରୁ ସ୍ୱଦେଶୀ ଆନ୍ଦୋଳନର କେତେକ କର୍ମକର୍ତ୍ତାଙ୍କ ସମେତ ଅରବିନ୍ଦ ଘୋଷ ୧୯୦୮ ମସିହା ମେ' ମାସରେ ଗିରଫ ହୋଇଥିଲେ । ବିଶ୍ୱେଶ୍ୱରାୟା ସେହି ସମୟରେ ଠିକ୍ ୧୯୦୮ ମସିହା ମେ ମାସରେ ତାଙ୍କର ଇସ୍ତଫାପତ୍ର ତତ୍କାଳୀନ ଗଭର୍ଣ୍ଣର ଲର୍ଡ ସିଡ୍େନହାମଙ୍କ ନିକଟକୁ ପଠାଇ ଦେଇଥିଲେ ।

ଲର୍ଡ ସିଡ୍େନହାମ ବିଶ୍ୱେଶ୍ୱରାୟାଙ୍କର ଇସ୍ତଫାପତ୍ର ପାଇ ହଠାତ୍ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ସେ ତୁରନ୍ତ ବିଶ୍ୱେଶ୍ୱରାୟାଙ୍କୁ ଇସ୍ତଫାପତ୍ର ଫେରାଇ ନେବାକୁ ଅନୁରୋଧ କରି ଲୋକ ପଠାଇଲେ ଏବଂ ଗୋରା ଲୋକଙ୍କ ପାଇଁ ସଂରକ୍ଷିତ

ଚିଫ୍ ଇଞ୍ଜିନିୟର ପଦରେ ନିଯୁକ୍ତି ବିଶ୍ୱେଶ୍ୱରୟାଙ୍କ କ୍ଷେତ୍ରରେ କୋହଳ କରିବା ପାଇଁ ସେ ବିହିତ ପଦକ୍ଷେପ ନେବେ ବୋଲି ପ୍ରତିଶ୍ରୁତି ଦେଲେ ।

ବିଶ୍ୱେଶ୍ୱରୟାଙ୍କର କେତେକ ଶୁଭେଚ୍ଛୁ ବନ୍ଧୁ ଇସ୍ତଫା ଦେବାରୁ କ୍ଷାନ୍ତ ରହିବାକୁ ପ୍ରବର୍ତ୍ତାଇଲେ । ସେମାନେ ଯୁକ୍ତିକରି କହିଲେ ଯେ, ସେ ଆଉ ଦୁଇବର୍ଷ ପରେ ଇସ୍ତଫା ଦେଲେ, ଅବସରକାଳୀନ ପେନସନ ସମ୍ପୂର୍ଣ୍ଣ ମିଳିବା ପାଇଁ ହକ୍‌ଦାର ହେବେ । ତେଣୁ ସେ ଇସ୍ତଫା ନଦେବା ଉଚିତ୍ ।

ବିଶ୍ୱେଶ୍ୱରୟାଙ୍କ ପାଖରେ ଦୁଇଟି ରାସ୍ତା ରହିଲା । ଗୋଟିଏ ରାସ୍ତା—ଆଉ ଦୁଇବର୍ଷ ଚାକିରିରେ ରହି ପୂରା ପେନସନ ଉପଭୋଗ କରିବା ଏବଂ ଅନ୍ୟ ରାସ୍ତାଟି ହେଲା ଆତ୍ମସମ୍ମାନ । ଅରବିନ୍ଦଙ୍କର ଡାକରା ତାଙ୍କ କର୍ଣ୍ଣ ମଧ୍ୟରେ ପ୍ରତିଧ୍ୱନିତ ହେଉଥିଲା । ଇଂରେଜମାନଙ୍କର ପକ୍ଷପାତ ବିଚାର ଆଗରେ ମୁଣ୍ଡ ନ ନୁଆଇଁବାକୁ ସିଦ୍ଧାନ୍ତ ଗ୍ରହଣ କଲେ ।

ସେ ରାଜ୍ୟପାଳ ଲର୍ଡ ସିଡ଼େନ-ହାମଙ୍କ ଇସ୍ତଫା ପ୍ରତ୍ୟାହାର ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଲେ । ବିଶ୍ୱେଶ୍ୱରୟା ଯଦିଓ ପୂରା ପେନସନ ପାଇବା ପାଇଁ ହକଦାର ନଥିଲେ ତଥାପି ବମ୍ବେ ସରକାର ଦେଶପାଇଁ ତାଙ୍କର ବିଶିଷ୍ଟ ସେବା ହେତୁ ତାଙ୍କୁ ପୂରା ପେନସନ ମଞ୍ଜୁରୀ କରିଥିଲେ ।

—*—

ସପ୍ତମ ପରିଚ୍ଛେଦ :

# ହାଇଦ୍ରାବାଦରେ ବିଶ୍ୱେଶ୍ୱରାୟା

ହାଇଦ୍ରାବାଦ ଇତିହାସରେ ୧୯୦୮ ମସିହା ସେପ୍‌ଟେମ୍ବର ୨୮ ତାରିଖ ଦିନଟି ଅତ୍ୟନ୍ତ ମର୍ମନ୍ତୁଦ ଓ ଦୁଃଖଦ ଦିନ । ହାଇଦ୍ରାବାଦ ସହର ମୂଷା ନଦୀ ଦ୍ୱାରା ଦୁଇ ଭାଗରେ ବିଭକ୍ତ । ପ୍ରଳୟଙ୍କରୀ ଘୂର୍ଣ୍ଣିବାତ୍ୟା ସହ ପ୍ରବଳରୁ ଅତି ପ୍ରବଳ ବର୍ଷା ହୋଇ ମୂଷା ଓ ଇସା ନଦୀରେ ପ୍ରବଳ ବନ୍ୟା ଆସିଲା । ଏପରି ଭୟଙ୍କର ବନ୍ୟା ଏହି ନଦୀରେ ପୂର୍ବରୁ କେବେ ହୋଇ ନଥିଲା । ସହରର ବହୁ ଘରେ ପାଣିପଶି କଣ୍ଢଘର ସବୁ ଭାଙ୍ଗିଗଲା । ବନ୍ୟାରେ ବହୁ ଗୋରୁ ଗାଈ ଭସିଗଲେ । ଅନେକ ଲୋକ ପାଣି ଘେରରେ ରହି ଅନାହାରରେ ମୃତ୍ୟୁ ମୁଖରେ ପଡ଼ିଲେ ଏବଂ ବହୁ ଧନ ଜୀବନ ନଷ୍ଟ ହେଲା । ନଦୀକୂଳର ବହୁ ଅଧିବାସୀ ବାସଗୃହ ହରାଇ ନଦୀର ପ୍ରଖର ସ୍ରୋତରେ ଭସିଗଲେ ।

ମୂଷାନଦୀ ଅବବାହିକାରେ ଥିବା ୨୨୧ ଗୋଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ଓ ପୁଷ୍କରିଣୀର ଆଡ଼ିବନ୍ଧ ଭାଙ୍ଗି ପ୍ରବଳ ଜଳସ୍ରୋତ ମାଡ଼ି ଆସିଲା । ମୂଷା ଓ ଇସା ଏହି ଦୁଇ ନଦୀ ମଧ୍ୟରେ ହାଇଦ୍ରାବାଦ ସହରଟି ଅବସ୍ଥିତ । ପ୍ରତିବର୍ଷ ଏହିପରି ଥରକୁ ଥର ବନ୍ୟା ଆସେ, ମାତ୍ର ୧୯୦୮ ମସିହାର ଏହି ପ୍ରଳୟଙ୍କରୀ ବନ୍ୟା ଥିଲା ସ୍ୱତନ୍ତ୍ର । ଏହି ନଦୀ ଅବବାହିକାରେ ଦିନକ ମଧ୍ୟରେ ୧୨ରୁ ୧୮ ଇଞ୍ଚ (୩୦୫ ମିଲିମିଟରରୁ ୪୫୭ ମିଲିମିଟର) ଯାଏ ଅବିଶ୍ରାନ୍ତ ବର୍ଷା ହେଲା । ମୂଷାନଦୀଟି ବଡ଼ ନ ହେଲେ ମଧ୍ୟ ବନ୍ୟା ସମୟରେ ଏହା ଭୟଙ୍କର ରୂପ ଧାରଣ କରୁଥିଲା ।

ଧନ ଜୀବନ ରକ୍ଷା କରିବା ଶାସକଙ୍କର କର୍ତ୍ତବ୍ୟ । ହାଇଦ୍ରାବାଦ ଏକ ଦେଶୀୟ ରାଜ୍ୟ । ଏହା ସେହି ସମୟରେ ନିଜାମଙ୍କ ଦ୍ୱାରା ଶାସିତ ହେଉଥିଲା । ବିଶ୍ୱେଶ୍ୱରାୟା ସେହି ସମୟରେ ମେ ମାସରୁ ବମ୍ବେ ସରକାରୀ ଚାକିରିରୁ ଇସ୍ତଫା ଦେଇ ବିଦେଶ ଗସ୍ତରେ ଥିଲେ । ନିଜାମ ତାଙ୍କୁ ଦେଶକୁ ଫେରାଇ ଆଣି ଏହି କାର୍ଯ୍ୟରେ ନିଯୁକ୍ତି କରିବା ପାଇଁ ସ୍ଥିର କଲେ ।

ନିଜାମଙ୍କ ତରଫରୁ ଭାରତ ସରକାର ଲଣ୍ଡନକୁ କେବୁଲ୍ (ସମୁଦ୍ର ତାର) ସାହାଯ୍ୟରେ ସନ୍ଦେଶ ଦେଲେ ଯେ ନିଜାମ ସରକାର ତାଙ୍କର ବିଶିଷ୍ଟ ସେବା ଚାହିଁଛନ୍ତି, ତୁରନ୍ତ ଭାରତ ଫେରିଆସନ୍ତୁ ବୋଲି ବିଶ୍ୱେଶ୍ୱରାୟାଙ୍କୁ ଜଣାଇବେ । ସେତେବେଳେ ସେ ଇଟାଲିର ମିଲନଠାରେ ଥିଲେ । ବ୍ରିଟିସ ସରକାର ଲଣ୍ଡନଠାରୁ ତାଙ୍କ ନିକଟକୁ ଏକ ପତ୍ର ଲେଖି ଅନୁରୋଧ କଲେ ଯେ ସେ ତୁରନ୍ତ ମିଲନ ଛାଡ଼ି ହାଇଦ୍ରାବାଦରେ ପହଞ୍ଚନ୍ତୁ । ବିଶ୍ୱେଶ୍ୱରାୟା ଜଣାଇ ଦେଲେ ଯେ ସେ ତାଙ୍କର

ପାଞ୍ଚମାସବ୍ୟାପୀ ଗ୍ରସ୍ତ ଶେଷ ନକରି ଫେରିବାକୁ ଚାହୁଁ ନାହାନ୍ତି । ତେଣୁ ସରକାର ଯଦି ଅପେକ୍ଷା କରି ନ ପାରୁଛନ୍ତି ଅନ୍ୟ କାହାକୁ ଅବସ୍ଥାପିତ କରି କାର୍ଯ୍ୟ କରାଇ ନିଅନ୍ତୁ ।

ଯେତେବେଳେ ପୁଣି ଥରେ ଫେରି ଆସିବାକୁ ତାଙ୍କ ଉପରେ ଚାପ ପ୍ରୟୋଗ କରାଗଲା, ସେ କେତେକ ସର୍ତ୍ତ ଆରୋପ କରି କହିଲେ :—୧) ଏକା ପଦବୀ ପାଇଁ ଇଉରୋପୀୟମାନଙ୍କୁ ଯେଉଁ ଦରମା ଦିଆ ହେଉଛି ସେହି ଦରମା ଭାରତୀୟଙ୍କ ପାଇଁ ଲାଗୁହେଉ । ୨) ତାଙ୍କୁ ସାହାଯ୍ୟ କରିବା ପାଇଁ ଯେ କୌଣସି ସୁଯୋଗ୍ୟ ବ୍ୟକ୍ତିଙ୍କୁ ନିଯୁକ୍ତି କରିବାର କ୍ଷମତା ଦିଆଯାଉ । ବିଉଣାଳୀ ନିଜାମ ସମସ୍ତ ସର୍ତ୍ତରେ ରାଜିହେଲେ ।

ସେ ଆମେରିକା, କାନଡ଼ା ଓ ରୁଷିଆ ପ୍ରଭୃତି ଦେଶ ଭ୍ରମଣ କରି ଶେଷରେ ୧୯୦୯ ମସିହା ଅପ୍ରେଲ ମାସରେ ଭାରତ ଫେରିଲେ । ସେ ସଙ୍ଗେ ସଙ୍ଗେ ସେହିବର୍ଷ ଅପ୍ରେଲ ପନ୍ଦର ତାରିଖରେ ହାଇଦ୍ରାବାଦ ଚିଫ୍ ଇଞ୍ଜିନିୟର ରୂପେ ଯୋଗ ଦେଲେ ।

ମୂଷାନଦୀ ବନ୍ୟା ନିୟନ୍ତ୍ରଣ କରିବାକୁ ବିଶ୍ୱେଶ୍ୱରୟାଙ୍କୁ ନିଜାମ ସରକାର ନିର୍ଦ୍ଦେଶ ଦେଲେ । ତାଙ୍କ ଅଧୀନରେ କେତେଜଣ ଇଞ୍ଜିନିୟର ଏବଂ ଅନ୍ୟାନ୍ୟ ସହକାରୀମାନଙ୍କୁ ଅବସ୍ଥାପିତ କଲେ । ଜଣେ ଗୋରା ଇଞ୍ଜିନିୟର ଟି.ଡ଼ି. ମ୍ୟାକେନଜୀ ଭାରତୀୟଙ୍କ ଅଧୀନରେ କାମ କରିବାକୁ ମନା କରିଦେଲେ । କିଛିଦିନ ପରେ ବିଶ୍ୱେଶ୍ୱରୟାଙ୍କ କର୍ତ୍ତବ୍ୟପରାୟଣତା ଓ ଗୁଣରେ ମୁଗ୍ଧ ହୋଇ ତାଙ୍କର ପରମ ମିତ୍ର ହୋଇଗଲେ ଏବଂ ପ୍ରତ୍ୟେକ କାର୍ଯ୍ୟରେ ତାଙ୍କର ସହାୟତା କଲେ ।

ବିଶ୍ୱେଶ୍ୱରୟା ବମ୍ବେ ସରକାରରେ ଥିବା ଅତି ବଛା ବଛା କେତେଜଣ ଇଞ୍ଜିନିୟରଙ୍କୁ ହାଇଦ୍ରାବାଦ ଅଣାଇଲେ । ମୂଷାନଦୀର ଉତ୍ପତ୍ତି ସ୍ଥଳରୁ କୃଷ୍ଣାନଦୀରେ ସଙ୍ଗମ ହେବା ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳର ସର୍ବେକ୍ଷଣ କଲେ । ମୂଷାନଦୀର ଜଳଗ୍ରହ ଅଞ୍ଚଳରେ ୭୮୮ଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ଓ ପୁଷ୍କରିଣୀ ଅଛି । ସେଥି ମଧ୍ୟରୁ ୨୨୧ଟି ସମ୍ପୂର୍ଣ୍ଣ ଭଗ୍ନ ଅବସ୍ଥାରେ ଅଛି । ସେଗୁଡ଼ିକୁ ତୁରନ୍ତ ପୁନଃସ୍ଥାପନ କରିବାକୁ ପଡ଼ିବ, ନଚେତ୍ ପରବର୍ତ୍ତୀ ବର୍ଷାସମୟରେ ପୁଣି ହାଇଦ୍ରାବାଦ ସହରକୁ ବିପଦ ଦେଖାଦେବ ।

ବିଶ୍ୱେଶ୍ୱରୟା ସହଯୋଗୀମାନଙ୍କ ସହ ବନ୍ୟା ନିୟନ୍ତ୍ରଣ ପାଇଁ ସଘନ ସର୍ବେକ୍ଷଣ ପରେ ହାଇଦ୍ରାବାଦ ସହରର ଜନସ୍ୱାସ୍ଥ୍ୟ ବ୍ୟବସ୍ଥା ଉପରେ ଅଧିକ ଜୋର ଦେଇଥିଲେ । ସେତେବେଳେ ମୂଷାନଦୀ ମଧ୍ୟରେ ସହରର ସମସ୍ତ ମଇଳା ଆବର୍ଜନା ନିଷ୍କାସିତ ହେଉଥିଲା । ଏହି ଆବର୍ଜନା ଖରାଦିନେ ନଦୀଶଯ୍ୟାରେ ଗଦା ହୋଇ ରହୁଥିଲା । ଏହାଫଳରେ ମ୍ୟାଲେରିଆ ଏବଂ ଅନ୍ୟାନ୍ୟ ସଂକ୍ରାମକ ରୋଗ ବ୍ୟାପିବାର ବିଶେଷ ସମ୍ଭାବନା ଥିଲା । ସେ ବନ୍ୟା ନିୟନ୍ତ୍ରଣ ପାଇଁ ସର୍ବେକ୍ଷଣ ସମୟରେ ହାଇଦ୍ରାବାଦ ସହରର ଜନସ୍ୱାସ୍ଥ୍ୟ ଓ ନାଳ ନର୍ଦ୍ଦମାର ଉପଯୁକ୍ତ ଯୋଜନା କରି

ଭୂମିତଳେ ନାଳର ଏକ ବ୍ୟବସ୍ଥା କରିଥିଲେ । ନଦୀମାନଙ୍କରେ ଦୁଇଟି ଜଳଭଣ୍ଡାର ନିର୍ମାଣ ପାଇଁ ପ୍ରସ୍ତାବ ଦେଇଥିଲେ ।

ବିଶ୍ୱେଶ୍ୱରୟା ମୂଷାନଦୀରେ ପୂର୍ବରୁ କେତେଥର ବଡ଼ ବଡ଼ ବନ୍ୟା ଆସିଛି ତାର ନଥିପତ୍ର ସଂଗ୍ରହ କଲେ । ପୂର୍ବବର୍ଷମାନଙ୍କର ବୃଷ୍ଟିପାତ ସଂଗ୍ରହ କଲେ । ସେ ସର୍ବୋଚ୍ଚ ବୃଷ୍ଟିପାତ ପାମକୋଲ ଓ ପର୍ତି ଜଳଭଣ୍ଡାର ଅଞ୍ଚଳରେ ହୋଇଥିବା ଜାଣିବାକୁ ପାଇଲେ । ପର୍ତି ଜଳଭଣ୍ଡାର ହାଇଦ୍ରାବାଦର ଉପରମୁଣ୍ଡକୁ ୩୫ କିଲୋମିଟର ଦୂରରେ ଅବସ୍ଥିତ । ଅତ୍ୟଧିକ ବୃଷ୍ଟିପାତ ଯୋଗୁଁ ଏହି ଜଳଭଣ୍ଡାରଟି ରାତ୍ରିଭେର ୫ ଘଟିକା ସମୟରେ ଭୁଷୁଡ଼ି ପଡ଼ିଲ । ଏହାର ଜଳସ୍ରୋତ ପ୍ରାୟ ଘଣ୍ଟାକୁ ୬ କିଲୋମିଟର ବେଗରେ ମାଡ଼ିଆସି ହାଇଦ୍ରାବାଦ ସହରରେ ସକାଳ ୧୧ ଘଟିକା ସମୟରେ ପହଞ୍ଚିଥିଲ । ସେ ସବିସ୍ତୃତ ପରିକଳ୍ପନା ପ୍ରସ୍ତୁତି ପାଇଁ ବମ୍ବେ ଓ ମାଡ୍ରାସର ବୃଷ୍ଟିପାତର ପରିମାଣ ସଂଗ୍ରହ କରିଥିଲେ ।

ବିଶ୍ୱେଶ୍ୱରୟା ବନ୍ୟା ନିୟନ୍ତ୍ରଣ ପାଇଁ ଏକ ସୁପରିକଳ୍ପିତ ଯୋଜନା ପ୍ରସ୍ତୁତ କଲେ । ମୂଷାନଦୀର ଉପର ମୁଣ୍ଡରେ ପ୍ରାୟ ୧୩୧ କିଲୋମିଟର ଦୂରରେ ଏକ ଜଳଭଣ୍ଡାର ନିର୍ମାଣ କରିବାକୁ ପ୍ରସ୍ତାବ ଦେଲେ । କେବଳ ମୂଷାନଦୀରେ ଜଳଭଣ୍ଡାର କଲେ ସମସ୍ୟାର ସମାଧାନ ହେବନାହିଁ ଭାବି ହାଇଦ୍ରାବାଦର ଅନ୍ୟତମ ନଦୀ ଇସାରେ ମଧ୍ୟ ଏକ ବନ୍ଧ ନିର୍ମାଣ ପାଇଁ ପ୍ରସ୍ତାବ ଦେଲେ । ଇସାନଦୀ ମୂଷାନଦୀର ଉପନଦୀ । ଏହାର ଉପର ମୁଣ୍ଡରେ ପ୍ରାୟ ସାଢ଼େଦଶ କିଲୋମିଟର ଦୂରରେ ଏହି ଜଳଭଣ୍ଡାର ପାଇଁ ସ୍ଥାନ ନିରୂପଣ କରିଥିଲେ । ଏହି ନଦୀମାନଙ୍କରେ ବନ୍ୟା ନିୟନ୍ତ୍ରଣ ସହ କିପରି ସେହି ଜଳର ସଦୁପଯୋଗ ହୋଇ ପାରିବ, ତାର ସବିସ୍ତୃତ ପରିକଳ୍ପନା ସେ କରିଥିଲେ ।

ବିଶ୍ୱେଶ୍ୱରୟା ଯେତେ ବଡ଼ ଇଞ୍ଜିନିୟର ହୁଅନ୍ତୁନା କାହିଁକି ଏହି ପ୍ରସ୍ତାବ ବିରୁଦ୍ଧରେ ନିଜାମ ସରକାରଙ୍କ ପାଖରେ ଆପତ୍ତି ହେଲ । ନିଜାମ ସରକାର ଏହି ପ୍ରସ୍ତାବକୁ ଭଲ ଭାବେ ପରୀକ୍ଷା କରିବାକୁ ସ୍ଥିର କଲେ । ଏହି ପରିକଳ୍ପନାଟିକୁ ମାଡ୍ରାସ ସରକାରଙ୍କର ଜଣେ ଇଞ୍ଜିନିୟର ଗେସ୍‌କୋ ଆଲେନଙ୍କ ଦ୍ୱାରା ପରୀକ୍ଷା କରାଇଲେ । ଗେସ୍‌କୋ ଆଲେନ ପୂର୍ବରୁ ନିଜାମ ସରକାରଙ୍କ ଚାକିରିରେ ଥିଲେ । ସେ ମତ ଦେଲେ ଯେ ଜଣେ ପ୍ରଖ୍ୟାତ ଇଞ୍ଜିନିୟରଙ୍କ ନିକଟରୁ ଯାହା ଆଶା କରିବାର ଥିଲ ତାହାହିଁ ହୋଇଛି । ଏହାର କାର୍ଯ୍ୟକାରିତା ଉପରେ ସେ ଦୃଢ଼ ମତପୋଷଣ କରିଥିଲେ । ସେ କହିଥିଲେ ଯେ ଏହା "as sound as what one might expect from the distinguished engineer who drew them up. He has shown the way to turn dire misfortune into a positive blessing. The proposals are without

blemish. I strongly advocate carrying out the Scheme."

ମୂଷାନଦୀ କୂଳର ଉତ୍ତର ଦିଗ ବନ୍ଧଟି ଅତ୍ୟନ୍ତ ନୀଚା ଥିଲା । ବିଶ୍ୱେଶ୍ୱରୟା ଦୁଇକୂଳର ଆଡ଼ିବନ୍ଧଗୁଡ଼ିକୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ସୁରମ୍ୟ ଉଦ୍ୟାନମାନ ନିର୍ମାଣ କରିବାକୁ ପ୍ରସ୍ତାବ ଦେଲେ । ହାଇଦ୍ରାବାଦ ସହରକୁ ଆଧୁନିକୀକରଣ କରିବା ପାଇଁ ରାସ୍ତାଗୁଡ଼ିକ ଅଧିକ ଓସାର କରିବା, ଭୂମିତଳେ ନାଳ, ନର୍ଦ୍ଦମା ନିର୍ମାଣ ଜଳଯୋଗାଣ ପ୍ରଭୃତି ଅନେକ କାର୍ଯ୍ୟ ସେହି ଯୋଜନା ମଧ୍ୟରେ ଥିଲା । ଗରିବ ଲୋକମାନଙ୍କ ପାଇଁ ବାସଗୃହ ନିର୍ମାଣ ସହ ଅସ୍ୱାସ୍ଥ୍ୟକର ବସ୍ତିର ଉଚ୍ଛେଦ ମଧ୍ୟ ଏହାର ଅନ୍ତର୍ଭୁକ୍ତ ।

ନିଜାମ ସରକାର ବିଶ୍ୱେଶ୍ୱରୟାଙ୍କ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ପାଇଁ ସାଢ଼େତିନିବର୍ଷ ସମୟ ନେଲେ । ମୂଷାନଦୀ ବନ୍ଧର ଭିତ୍ତିପ୍ରସ୍ତର ସ୍ଥାପନ ୧୯୧୩ ମସିହା ମାର୍ଚ୍ଚରେ ହୋଇଥିଲା । ଭିତ୍ତିପ୍ରସ୍ତର ସ୍ଥାପନ କରି ହାଇଦ୍ରାବାଦର ନିଜାମ ବିଶ୍ୱେଶ୍ୱରୟାଙ୍କ ଉପରେ ଟିପ୍ପଣୀ ଦେଇ ତାଙ୍କୁ ଭାରତର ଜଣେ ଉଚ୍ଚକୋଟିର ଦକ୍ଷ ଇଞ୍ଜିନିୟର ଭାବେ ଅଭିହିତ କରିଥିଲେ ।

ବିଶ୍ୱେଶ୍ୱରୟା ହାଇଦ୍ରାବାଦରେ ବେଶୀଦିନ ଚିଫ୍ ଇଞ୍ଜିନିୟର ରହିପାରିଲେ ନାହିଁ । ମହୀଶୂର ରାଜ୍ୟର ଚିଫ୍ ଇଞ୍ଜିନିୟର ମିଷ୍ଟର ଏମ୍. ମାକ୍‌ହଚିନ୍ ଅବସର ନେବା ପରେ ମହୀଶୂରର ମହାରାଜା ବିଶ୍ୱେଶ୍ୱରୟାଙ୍କୁ ଅନୁରୋଧ କଲେ ଯେ ସେ ଆସି ତାଙ୍କ ରାଜ୍ୟର ଉନ୍ନୟନ କାର୍ଯ୍ୟରେ ଭାଗ ନିଅନ୍ତୁ । ବିଶ୍ୱେଶ୍ୱରୟା ମହାରାଜାଙ୍କ ଅନୁରୋଧକୁ ରକ୍ଷାକରି ହାଇଦ୍ରାବାଦରୁ ଇସ୍ତଫା ଦେଲେ । ନିଜାମଙ୍କୁ ସେ ନିର୍ଭର ପ୍ରତିଶ୍ରୁତି ଦେଲେ ଯେ ସେ ଯେତେବେଳେ ଚାହିଁବେ ତାଙ୍କର ପରିକଳ୍ପନାଗୁଡ଼ିକୁ ପର୍ଯ୍ୟବେକ୍ଷଣ କରିବାରେ କିଛି ଅସୁବିଧା ହେବ ନାହିଁ ।

ବିଶ୍ୱେଶ୍ୱରୟାଙ୍କ ସୁପାରିଶ କ୍ରମେ ମହୀଶୂର ରାଜ୍ୟରେ ବନ୍ଧ ନିର୍ମାଣରେ ଜଣେ ବିଶେଷଜ୍ଞ ଇଞ୍ଜିନିୟର ସି. ଟି. ଦଲାଲଙ୍କୁ ହାଇଦ୍ରାବାଦର ଜଣେ ସ୍ୱତନ୍ତ୍ର ଇଞ୍ଜିନିୟର ରୂପେ ନିଯୁକ୍ତି କରାଗଲା । ସେ ମୂଷା ଓ ଇସା ନଦୀରେ ନିର୍ମାଣାଧୀନ ଦୁଇଟି ଜଳଭଣ୍ଡାରର ନିର୍ମାଣ କାର୍ଯ୍ୟର ଦାୟିତ୍ୱ ନେଲେ । ବିଶ୍ୱେଶ୍ୱରୟା ନିଜାମଙ୍କ ଅନୁରୋଧରେ ଅନେକ ଥର ତାଙ୍କ ଦ୍ୱାରା ପ୍ରଦତ୍ତ ପରିକଳ୍ପନା ଗୁଡ଼ିକ ପର୍ଯ୍ୟବେକ୍ଷଣ କରି ଉପଯୁକ୍ତ ପରାମର୍ଶ ଦେଇଥିଲେ । ମୂଷାନଦୀ ଉପରେ ନିର୍ମିତ ବନ୍ଧର ନାମ ହିମାୟତ ସାଗର ଏବଂ ଇସା ନଦୀ ଉପରେ ନିର୍ମିତ ବନ୍ଧର ନାମ ଓସ୍‌ମାନ ସାଗର । ବର୍ତ୍ତମାନ ମଧ୍ୟ ଏହି ହିମାୟତ ସାଗର ଓ ଓସ୍‌ମାନ ସାଗରର ଜଳ ସୌନ୍ଦର୍ଯ୍ୟମୟ ଦ୍ୱୈତ ସହର ହାଇଦ୍ରାବାଦ୍ ଓ ସିକନ୍ଦରବାଦକୁ ଯୋଗାଇ ଦିଆଯାଉଛି ।

ଭାରତର ଏକ ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟମୟ ନଗର ହିସାବରେ ବର୍ତ୍ତମାନ ହାଇଦ୍ରାବାଦ ପରିଗଣିତ ହେଉଛି । ଧୂଳିବିହୀନ ପ୍ରଶସ୍ତ ଜନପଥ, ସୁରମ୍ୟ ଉଦ୍ୟାନ, ସୁରମ୍ୟ ଅଟ୍ଟାଳିକା, ପ୍ରମୋଦବନ ଓ ସୁନ୍ଦର ପରିବେଶ ପାଇଁ ଏହା ବିଶେଷରୂପେ ଖ୍ୟାତି ଅର୍ଜନ କରିଛି । ଏହି ସହରକୁ ହଜାର ହଜାର ଲୋକ ପରିଭ୍ରମଣରେ ଆସି ବିଶ୍ୱେଶ୍ୱରୟାଙ୍କ ଇଞ୍ଜିନିୟରିଙ୍ଗ କୌଶଳ ଓ ଦୂରଦୃଷ୍ଟିର ପ୍ରଶଂସା କରନ୍ତି ।

ଟି. ଡ଼ି. ମ୍ୟାକେନଜୀ ପ୍ରଥମେ ବିଶ୍ୱେଶ୍ୱରୟାଙ୍କ ପରି ଜଣେ ଭାରତୀୟ ଇଞ୍ଜିନିୟରଙ୍କ ଅଧୀନରେ କାମ କରିବାକୁ ମନା କରିଦେଇଥିଲେ । ସେ ପୁଣି ପରେ ବିଶ୍ୱେଶ୍ୱରୟାଙ୍କର ପ୍ରଶଂସକ ହୋଇଥିଲେ । ସେ ପରେ ଉଚ୍ଚ ପଦବୀକୁ ଉଠି ହାଇଦ୍ରାବାଦର ଚିଫ୍ ଇଞ୍ଜିନିୟର ହୋଇଥିଲେ । ସେ ଥରେ ତାଙ୍କର ଉଚ୍ଚ ପ୍ରଶଂସା କରି କହିଥିଲେ, "The choice fell upon Visvesvaraya. Visvesvaraya is one of the ablest of India's engineers, who could have made his mark in any walk of life and who is now doing service as Dewan of Mysore".

ବିଶ୍ୱେଶ୍ୱରୟା ୭ମାସ ପର୍ଯ୍ୟନ୍ତ ହାଇଦ୍ରାବାଦର ଚିଫ୍ ଇଞ୍ଜିନିୟର ରହି ୧୯୦୯ ନଭେମ୍ବର ମାସରେ ପଦରୁ ଅବ୍ୟାହତି ନେଇଥିଲେ ।



ଅଷ୍ଟମ ପରିଚ୍ଛେଦ :

# କୃଷ୍ଣରାଜ ସାଗର ଯୋଜନା

୧୯୦୯ ମସିହା ନଭେମ୍ବର ମାସ ୧୫ ତାରିଖରେ ସାର୍ ମୋକ୍ଷଗୁଣ୍ଡମ ବିଶ୍ୱେଶ୍ୱରୟା ମହିଶୂର ରାଜ୍ୟର ଚିଫ୍ ଇଞ୍ଜିନିୟର ପଦରେ ଯୋଗ ଦେଇଥିଲେ । ଏହି ପଦରେ ଯୋଗ ଦେବା ପାଇଁ ମହୀଶୂରର ମହାରାଜା ଶ୍ରୀକୃଷ୍ଣରାଜେନ୍ଦ୍ର ଓ୍ୱାଡେକରଙ୍କ ନିର୍ଦ୍ଦେଶରେ ତତ୍କାଳୀନ ଦେଓ୍ୱାନ ଭି. ପି. ମାଧବରାଓ ବିଶ୍ୱେଶ୍ୱରୟାଙ୍କୁ ଅନୁରୋଧ କରିଥିଲେ । କିନ୍ତୁ ୧୯୦୯ ଏପ୍ରିଲ ୧୦ ତାରିଖରେ ସେହି ପତ୍ରଟି ପାଇଲା ବେଳକୁ ସେ ହାଇଦ୍ରାବାଦର ଚିଫ୍ ଇଞ୍ଜିନିୟର ପଦରେ ଯୋଗଦେଇ ସାରିଥିଲେ ।

ଦେଓ୍ୱାନ ଭି.ପି. ମାଧବ ରାଓ ଅବସର ନେଲାପରେ ଟି. ଆନନ୍ଦ ରାଓ ତାଙ୍କ ସ୍ଥାନରେ ଦେଓ୍ୱାନ ନିଯୁକ୍ତ ହୋଇଥିଲେ । ସେତେବେଳେ ମହୀଶୂର ରାଜ୍ୟର ଚିଫ୍ ଇଞ୍ଜିନିୟର ମାକ୍ ହଚିନ୍ ଅବସର ଗ୍ରହଣ କରିଥାନ୍ତି, ମହାରାଜାଙ୍କ ତରଫରୁ ଦେଓ୍ୱାନ ଟି. ଆନନ୍ଦ ରାଓ ପୁନରାୟ ବିଶ୍ୱେଶ୍ୱରୟାଙ୍କୁ ଅନୁରୋଧ କରି ପତ୍ର ଲେଖିଲେ ଯେ ତାଙ୍କର ସେବା ମହୀଶୂର ରାଜ୍ୟକୁ ଉପଲବ୍ଧ ହେବା ଅତ୍ୟନ୍ତ ଜରୁରୀ ।

ମହୀଶୂର ରାଜ୍ୟର ଚିଫ୍ ଇଞ୍ଜିନିୟର ପଦବୀ କେବଳ ଇଉରୋପୀୟମାନଙ୍କ ପାଇଁ ସଂରକ୍ଷିତ ଥିଲା । ବିଶ୍ୱେଶ୍ୱରୟାଙ୍କ କ୍ଷେତ୍ରରେ ଏହା ଅନ୍ତରାୟ ହେଲାନାହିଁ । ମହାରାଜା ତାଙ୍କୁ ମହୀଶୂରର ଚିଫ୍ ଇଞ୍ଜିନିୟର ପଦରେ ଅବସ୍ଥାପିତ କଲେ । ମାତ୍ର ବିଶ୍ୱେଶ୍ୱରୟା ନିଜ ରାଜ୍ୟର କେବଳ ଅର୍ଥ ଉପାର୍ଜନ କରିବାକୁ ଚାକିରି ପାଇଁ ବ୍ୟସ୍ତ ନ ଥିଲେ । ତାଙ୍କର ଅଭିଜ୍ଞତା ଓ ସାମର୍ଥ୍ୟ ପ୍ରଦର୍ଶନ କରିବାକୁ ସମସ୍ତ ସୁବିଧା ଉପଲବ୍ଧ ହେବା ଆବଶ୍ୟକ ବୋଲି ସେ ମନେ କଲେ । ସେ ମହାରାଜାଙ୍କ ନିକଟରେ ନିଜ ମନର ଅଭିଳାଷ ପ୍ରକାଶ କରି କହିଥିଲେ ଯେ ତାଙ୍କୁ ଦେଶର ଉନ୍ନତି ପାଇଁ ମୁକ୍ତ ହସ୍ତରେ ସମସ୍ତ କାର୍ଯ୍ୟ କରିବାକୁ କ୍ଷମତା ଦେବା ଆବଶ୍ୟକ । ମହାରାଜା ବିଶ୍ୱେଶ୍ୱରୟାଙ୍କର ଦେଶ ଓ ଦେଶ ବାହାରର ସମସ୍ତ ଅଭିଜ୍ଞତା ଓ ଅତୁଳନୀୟ ଜ୍ଞାନକୁ ବିଚାରକୁ ନେଇ ତାଙ୍କର ସମସ୍ତ ସର୍ତ୍ତ ମାନିନେଇଥିଲେ । ବ୍ରିଟିଶ ସରକାର ମଧ୍ୟ ୟୁରୋପିୟାନ୍‌ଙ୍କ ପାଇଁ ଥିବା ସଂରକ୍ଷିତ ପଦରେ ବିଶ୍ୱେଶ୍ୱରୟାଙ୍କର ନିଯୁକ୍ତିରେ କିଛି ଆପତ୍ତି କରି ନ ଥିଲେ ।

ମହୀଶୂର ରାଜ୍ୟ ସେତେବେଳେ ଆଠଟି ଜିଲ୍ଲାକୁ ନେଇ ଗଠିତ ହୋଇଥିଲା । ମହୀଶୂରର ମହାରାଜା ତା'ର ଶାସକ ଥିଲେ । ବର୍ତ୍ତମାନ କର୍ଣ୍ଣାଟକ ନାମରେ ନାମିତ

ପୂର୍ବତନ ମହୀଶୂର ରାଜ୍ୟ ୧୯ଟି ଜିଲ୍ଲାକୁ ନେଇ ଗଠିତ । ବିଶ୍ୱେଶ୍ୱରୟା ଚିଫ୍ ଇଞ୍ଜିନିୟର ନିଯୁକ୍ତ ହୋଇ କେବଳ ତାଙ୍କ ରାଜ୍ୟରେ କୋଠାବାଡ଼ି, ରାସ୍ତାଘାଟ ନିର୍ମାଣ ହେଲେ ଚଳିବ ନାହିଁ ବୋଲି ଅନୁଭବ କଲେ । ସେ ସେତେବେଳେ ପରାଧୀନ ମହୀଶୂରବାସୀଙ୍କ ଅବସ୍ଥା ଦେଖି ମ୍ରିୟମାଣ ହୋଇପଡ଼ିଥିଲେ । କିପରି ଲୋକମାନଙ୍କର ବିଶେଷ ଉନ୍ନତି ହୋଇପାରିବ ତାହାହିଁ ତାଙ୍କର ଚିନ୍ତାର ବିଷୟ ଥିଲା ।

ବିଶ୍ୱେଶ୍ୱରୟା ସେତେବେଳେ ଅନୁଭବ କଲେ ଯେ ଶିକ୍ଷାର ଅଭାବହିଁ ଏସବୁର ମୂଳ କାରଣ । ସେ ପାଶ୍ଚାତ୍ୟ ଦେଶମାନଙ୍କ ସଙ୍ଗେ ତୁଳନା କରି ଦେଖିଲେ ଯେ ସେଠାରେ ସାଧାରଣ ଶିକ୍ଷା ସହିତ ବୈଷୟିକ ପ୍ରଶିକ୍ଷଣ ଅତ୍ୟନ୍ତ ଜରୁରୀ ସହକାରେ ଦିଆଯାଉଥିବାରୁ ସେମାନେ ଏପରି ଉନ୍ନତ । ସେ ନିଜ ଦେଶରେ ସେଗୁଡ଼ିକ କିପରି ପ୍ରୟୋଗ ହୋଇପାରିବ ତା'ର ଉପାୟ ଚିନ୍ତା କଲେ । ସେ ସେତେବେଳେ ସର୍ବୋଚ୍ଚ ଯନ୍ତ୍ରୀ ଥିବାରୁ ରେଳବିଭାଗର ସଚିବ ହୋଇଥିଲେ । ସେ ଏହି ସଚିବ ପଦରେ ମହୀଶୂର ରାଜ୍ୟରେ ଦେବାନ୍ ହେବା ପର୍ଯ୍ୟନ୍ତ ପ୍ରାୟ ତିନି ବର୍ଷ ରହିଥିଲେ । ସେତେବେଳେ ରାଜ୍ୟରେ ବୈଷୟିକ ଶିକ୍ଷା ଓ ଶିଳ୍ପ ଉନ୍ନତି ପାଇଁ ଦୁଇଟି କମିଟି ସୃଷ୍ଟି ହୋଇଥିଲା । ବିଶ୍ୱେଶ୍ୱରୟା ସେହି ଦୁଇ କମିଟିରେ ଚେୟାରମ୍ୟାନ୍ ଥିଲେ ।

ମହିଶୂର ରାଜ୍ୟରେ ବିଶ୍ୱେଶ୍ୱରୟାଙ୍କ ନେତୃତ୍ୱରେ ଶିଳ୍ପ ବିପ୍ଳବ ସହ ଗୋଷ୍ଠୀ ଉନ୍ନୟନ କାର୍ଯ୍ୟକ୍ରମର ବିଶେଷ ରୂପ ନେଲା । ମହୀଶୂର ଅଞ୍ଚଳ ପ୍ରାକୃତିକ ବିଭବ ଏବଂ ଖଣିଜ ସମ୍ପଦରେ ପରିପୂର୍ଣ୍ଣ । ଦେଶରେ ଯଦି ଶିଳ୍ପ କାରଖାନା ପ୍ରତିଷ୍ଠା ହୋଇ ଆବଶ୍ୟକୀୟ ଦ୍ରବ୍ୟ ଉତ୍ପାଦନ କରାଯିବ ତାହାହେଲେ ସେହିସବୁ ଜିନିଷ ପାଇଁ ଆଉ ବିଦେଶୀ ରାଷ୍ଟ୍ର ଉପରେ ନିର୍ଭର କରିବାକୁ ପଡ଼ିବ ନାହିଁ । ତାହାଦ୍ୱାରା ଆମ ଦେଶର ଅର୍ଥ ଆମ ଦେଶରେହିଁ ରହିବ । ଉତ୍ପାଦିତ ଦ୍ରବ୍ୟ ଅନ୍ୟ ଦେଶକୁ ମଧ୍ୟ ରପ୍ତାନି କରାଯାଇ ପାରିବ । ଯେଉଁ ଦେଶର ଶିଳ୍ପ ରପ୍ତାନୀ ଯେତେ ଅଧିକ ସେ ଦେଶ ସେତିକି ବିତ୍ତଶାଳୀ । ୧୯୧୧ ମହିହାରେ ପ୍ରଥମ ଅର୍ଥନୈତିକ ସମ୍ମେଳନ ହୋଇଥିଲା । ସେଥିରେ ସାର ବିଶ୍ୱେଶ୍ୱରୟା ସଭାପତିତ୍ୱ କରିଥିଲେ । ମହାରାଜା ଏହି ସମ୍ମେଳନକୁ ଉଦ୍‌ଘାଟନ କରିଥିଲେ । ଶିଳ୍ପର ଉନ୍ନତି ପାଇଁ ଗଠିତ କମିଟିରେ ମାନ୍ଦ୍ରାଜର ଅବସରପ୍ରାପ୍ତ ନିର୍ଦ୍ଦେଶକ ସାର୍ ଆଲଫ୍ରେଡ୍ ଚ୍ଚଲଟରଟନ୍ ମୁଖ୍ୟବକ୍ତା ଭାବେ ଯୋଗ ଦେଇଥିଲେ । ଶିଳ୍ପ ବିପ୍ଳବକୁ ଜାଗ୍ରତ କରାଇବାରେ ଏହାଥିଲା ପ୍ରଥମ ପଦକ୍ଷେପ । ଅର୍ଥନୈତିକ କାର୍ଯ୍ୟକ୍ରମକୁ ଆଗେଇ ନେବାକୁ ହେଲେ କେତେକ ଘରୋଇକରଣ ପ୍ରସ୍ତାବକୁ ଅନୁମୋଦନ ଦେବା ସହ କେତେକ ସହାୟକ ଅନୁଷ୍ଠାନମାନ ଗଠନ ପାଇଁ ପ୍ରୋତ୍ସାହନ ମଧ୍ୟ ଆବଶ୍ୟକ ପଡ଼ିଥାଏ । ଏହି କାର୍ଯ୍ୟକ୍ରମର ପ୍ରଥମ ପଦକ୍ଷେପ ସ୍ୱରୂପ ବ୍ୟାଙ୍କ ଅଫ୍ ମହୀଶୂର ଓ ଚ୍ଚାମ୍ବର ଅଫ୍ କମର୍ସ ଗଠିତ ହୋଇଥିଲା । ପ୍ରଥମ ଅର୍ଥନୈତିକ ସମ୍ମେଳନହିଁ ମହୀଶୂର ଶିଳ୍ପର ମୂଳଭିତ୍ତି ।

ମହୀଶୂର ରାଜ୍ୟ ଏକ କୃଷି ପ୍ରଧାନ ରାଜ୍ୟ । କୃଷିର ପ୍ରଧାନ ଆବଶ୍ୟକତା ହେଉଛି ଜଳସେଚନ । ଜଳସେଚନ ପାଇଁ ନଦୀରେ ବନ୍ଧ ଆବଶ୍ୟକ । କାବେରୀ ନଦୀ ମହୀଶୂର ରାଜ୍ୟ ଦେଇ ମାନ୍ଦ୍ରାଜ ପ୍ରଦେଶରେ ପ୍ରବାହିତ । ମହୀଶୂର ଠାରୁ ୨୦ କିଲୋମିଟର ଦୂରରେ କାବେରୀ ନଦୀ ଦୁଇଟି ପାହାଡ଼ ମଧ୍ୟରେ ଏକ ଗିରିସଙ୍କଟ ମଧ୍ୟ ଦେଇ ଗତି କରିଛି । ସେଠାରେ ଏକ ଶିଳାଲେଖ ଦୃଷ୍ଟିଗୋଚର ହୁଏ । ଏହା ପାର୍ସୀ ଭାଷାରେ ଲିଖିତ । ସେଠାରୁ ଜଣାଯାଏ ଯେ ଅଷ୍ଟାଦଶ ଶତାବ୍ଦୀରେ ଟିପୁ ସୁଲତାନ ଏଠାରେ ଏକ ବନ୍ଧ ନିର୍ମାଣକରି କାବେରୀ ଜଳକୁ ଜଳସେଚନ କରିବାକୁ ଚାହିଁଥିଲେ । ଟିପୁସୁଲତାନଙ୍କ ସ୍ୱପ୍ନକୁ ସାର୍ ବିଶ୍ୱେଶ୍ୱରୟା ବିଭିନ୍ନ ବାଧାବିଘ୍ନ ମଧ୍ୟରେ ସାର୍ଥକ କରିପାରିଥିଲେ ।

କାବେରୀ ନଦୀରେ ବନ୍ଧ ନିର୍ମାଣ ହୁଇ ରାଜ୍ୟ ମଧ୍ୟରେ ଏକ ବିବାଦୀୟ ଘଟଣା । କାବେରୀ ନଦୀ ଭାରତର ବଡ଼ ବଡ଼ ନଦୀମାନଙ୍କ ମଧ୍ୟରେ ଅନ୍ୟତମ । ଏଡ଼େ ସୁଦୀର୍ଘ ଖରସ୍ରୋତସ୍ୱିନୀ କାବେରୀ ନଦୀ ଉପରେ ବନ୍ଧ ପକାଇବା ଜଣେ ଭାରତୀୟ ଇଞ୍ଜିନିୟରଙ୍କ ପକ୍ଷରେ ଏକ କଳ୍ପନା ବିଳାସ ବୋଲି କୁହାଯାଉଥିଲା । ବିଶ୍ୱେଶ୍ୱରୟା ମହୀଶୂରରେ ଚିଫ୍ ଇଞ୍ଜିନିୟର ହେଲା ପରେ କାବେରୀ ଅବବାହିକାର ଟିକି ନିକି ସର୍ବେକ୍ଷଣ ପରେ କନ୍ନମାଡ଼ି କଟ୍ଟେର (ପରେ ଏହାର ନାମ କୃଷ୍ଣରାଜ ସାଗର ହେଲା) ଏକ ସୁବିସ୍ତୃତ ନକ୍ସା ପ୍ରସ୍ତୁତ କଲେ । ଏହି ପରିକଳ୍ପନାଟି ବହୁମୁଖୀ । ଅର୍ଥାତ୍ କୃଷ୍ଣରାଜ ସାଗର ଯୋଜନାରୁ ଜଳସେଚନ ହେବା ସହିତ ଜଳବିଦ୍ୟୁତ୍ ମଧ୍ୟ ଉତ୍ପାଦିତ ହୋଇ ପାରିବ । ଜଳବିଦ୍ୟୁତ ଉତ୍ପାଦନ କେନ୍ଦ୍ର ପାଇଁ ଶିବ ସମୁଦ୍ର ପ୍ରପାତ ଉପଯୁକ୍ତ ସ୍ଥାନ । ଏଠାରୁ ଉତ୍ପାଦିତ ବିଦ୍ୟୁତ୍ ଭାରତର ପ୍ରଖ୍ୟାତ ସୁନାଖଣି କୋଲାର ସୁନାଖଣିକୁ ଯୋଗାଇ ଦିଆଯାଇ ପାରିବ । ତୃତୀୟରେ ଏହି ପ୍ରକଳ୍ପ କାର୍ଯ୍ୟ ସମ୍ପୂର୍ଣ୍ଣ ହେଲେ କାବେରୀ ନଦୀରେ ଆଉ ବନ୍ୟାର ପ୍ରକୋପ ରହିବ ନାହିଁ ।

ଏହିପରି ବହୁମୁଖୀ ଯୋଜନା ଭାରତର ଅନ୍ୟାନ୍ୟ ବଡ଼ ବଡ଼ ନଦୀବନ୍ଧ ଯୋଜନା ମଧ୍ୟରୁ ଅନ୍ୟତମ ହେଲେ ମଧ୍ୟ ଏହା ଭାରତରେ ପ୍ରଥମ ବହୁମୁଖୀ ଯୋଜନା । ବିଶ୍ୱେଶ୍ୱରୟା ୨ କୋଟି ୫୩ ଲକ୍ଷ ଟଙ୍କାର ଏକ ଅଟକଳ ପ୍ରସ୍ତୁତ କରି ସରକାରଙ୍କୁ ଦେଲେ । ପ୍ରକାଶ ଥାଉକି ସେତେବେଳେ ସରକାରଙ୍କର ମୋଟ ବାର୍ଷିକ ଆୟ ୨ କୋଟି ୨୩ ଲକ୍ଷ ଥିଲା । ସେ ରେଳପଥର ଉନ୍ନତି ପାଇଁ ଅନ୍ୟ ଏକ ଅଟକଳ ୯୪ ଲକ୍ଷର ଟଙ୍କାର ଆକ୍‌କଳନ କରି ସରକାରଙ୍କୁ ଦେଇଥିଲେ । କୃଷ୍ଣରାଜବନ୍ଧ ଯୋଜନା କାର୍ଯ୍ୟକାରୀ ହେଲେ ଏକ ଲକ୍ଷ କୋଡ଼ିଏ ଏକର ବା ୪୦ ହଜାର ୪୬୮ ହେକ୍ଟରକୁ ଜଳ ଯୋଗାଯିବା ସହ ୧୮୦୦୦ ଏଚ.ପି.ର ବିଦ୍ୟୁତ୍ ଉତ୍ପାଦିତ ହେବ । ସେଥିରୁ କୋଲାର ଖଣିପାଇଁ ୮୦୦୦ ଏଚ. ପି. ବିଦ୍ୟୁତ ଆବଶ୍ୟକ ପଡ଼ୁଥିଲା । ଆଉ ଅବଶିଷ୍ଟ ୧୦୦୦୦ ଏଚ୍.ପି. ବିଦ୍ୟୁତ୍ ଶହ ଶହ ଗ୍ରାମକୁ ବିଦ୍ୟୁତ୍ ଯୋଗାଇବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ କ୍ଷୁଦ୍ର ଶିଳ୍ପ ଓ ଉଠାଜଳସେଚନ ପାଇଁ ଶକ୍ତି ଯୋଗାଇବ ।

ଏହି ବନ୍ଧ ଯୋଜନା ଦ୍ୱାରା ଯେଉଁ ଉପକାର ହେବ ବୋଲି କୁହାଗଲା ସେ ସମ୍ପର୍କରେ କେବଳ ମହୀଶୂର ରାଜଦରବାର ଉଚ୍ଚ ଅଫିସର ନୁହନ୍ତି, ସେଠାରେ ଥିବା ବ୍ରିଟିଶ୍ ଅଫିସର ମଧ୍ୟ ସନ୍ଦିହାନ ଥିଲେ । କିନ୍ତୁ ବିଶ୍ୱେଶ୍ୱରୟାଙ୍କ ଖର୍ଚ୍ଚ ଅଟକଳ ଦେଖି ସମସ୍ତେ ସ୍ତମ୍ଭୀଭୂତ ହୋଇଗଲେ । ଦେଶୀୟ ରାଜ୍ୟଗୁଡ଼ିକ ଇଂରେଜ ଶାସନ ଅଧୀନରେ କରଦ ରାଜ୍ୟ ଥିବାରୁ ସେମାନଙ୍କର ସମସ୍ତ ଯୋଜନା ଓ କାର୍ଯ୍ୟ ବିଦେଶୀ ଶାସକମାନଙ୍କ ଦ୍ୱାରା ସର୍ବ ପ୍ରଥମେ ଅନୁମୋଦିତ ହେଉଥିଲା ।

ବିଶ୍ୱେଶ୍ୱରୟା ଦେଇଥିବା ଦୁଇଟି ପ୍ରକଳ୍ପ ମଧ୍ୟରୁ ସରକାରଙ୍କର ଅର୍ଥ ବିଭାଗ ଦ୍ୱିତୀୟ ଯୋଜନାକୁ ଅନୁମୋଦନ କଲେ । ପ୍ରଥମ ଯୋଜନାରେ ଯେଉଁ ବନ୍ଧ ପ୍ରକଳ୍ପ ନିର୍ମାଣ ହେବ ସେଥିରେ ବିପୁଳ ଅର୍ଥ ବ୍ୟୟ ହେବ । ଅର୍ଥ ସଚିବ ପ୍ରଶ୍ନ କରିଥିଲେ କୋଲର ସୁନାଖଣିରେ ମାତ୍ର ୮୦୦୦ ଏଚ. ପି. ବିଦ୍ୟୁତ ଆବଶ୍ୟକ ହେଉଥିବା ସ୍ଥଳେ କନ୍ନମ୍ବଡ଼ି ବନ୍ଧ ପ୍ରକଳ୍ପରୁ ୧୮୦୦୦ ଏଚ. ପି. ବିଦ୍ୟୁତ୍ ଉତ୍ପାଦନ ହେବ । ଏହା ଏକ ଅଯଥା ବ୍ୟୟବହୁଳ ପ୍ରକଳ୍ପ କାରଣ ବଳକା ବିଦ୍ୟୁତ୍‌ର କୌଣସି ଆବଶ୍ୟକତା ନଥିଲା ।

ବିଶ୍ୱେଶ୍ୱରୟା ନିଜେ ଦିଲ୍ଲୀ ଯାଇ ତତ୍‌କାଳୀନ ଇଂରେଜ ସରକାରଙ୍କର ଅର୍ଥ ସଚିବଙ୍କୁ କହିଲେ ଯେ ଆମ ରାଜ୍ୟରେ ଯେଉଁ ନୂତନ ଶିଳ୍ପ ପ୍ରକଳ୍ପମାନ ଗଢ଼ି ଉଠିବ ବଳକା ବିଦ୍ୟୁତ ସେଥିରେ ବିନିଯୋଗ ହେବ । ସରକାର ନିଜେ ବୃହତ୍ ଶିଳ୍ପମାନ ନିର୍ମାଣ କରି ତାର ଆବଶ୍ୟକତା ମେଣ୍ଟାଇ ପାରିବେ । ସେ ନିଜେ ମହୀଶୂର ମହାରାଜାଙ୍କୁ ଭେଟି କହିଲେ ଯେ କୃଷ୍ଣରାଜସାଗର ବନ୍ଧ ଯୋଜନାଟି ମହୀଶୂର ରାଜ୍ୟର ଏକ ସୁବର୍ଣ୍ଣହଂସୀ । ଏହା କେବଳ ସ୍ୱର୍ଣ୍ଣଡିମ୍ବ ଉତ୍ପାଦନ କରିବ । ଇଂରେଜ ସରକାରଙ୍କର ଅର୍ଥ ସଚିବ ଏହାର ତଣ୍ଟିଚିପି ହତ୍ୟା କରିବାକୁ ଚାହୁଁଛନ୍ତି । ତତ୍‌କାଳୀନ ମହୀଶୂରର ଦେଓ୍ୟାନ ଟି, ଆନନ୍ଦ ରାଓ ଏହି ପ୍ରସ୍ତାବର ପୂର୍ଣ୍ଣ ସମର୍ଥନ ଦେଇଥିଲେ ।

ବିଶ୍ୱେଶ୍ୱରୟାଙ୍କର ସମସ୍ତ ପ୍ରଚେଷ୍ଟା ବିଫଳ ହେଲା । ମହାରାଜାଙ୍କଠାରୁ କୌଣସି ଅନୁମୋଦନ ଆସିବାର ସମ୍ଭାବନା ନ ଥିବାରୁ ଅବସାଦ ଓ ଗ୍ଲାନିରେ ସେ ଭାଙ୍ଗି ପଡ଼ିଲେ । ସେ ଯେଉଁ ଆଶାନେଇ ମହୀଶୂର ରାଜ୍ୟରେ ଚିଫ୍ ଇଞ୍ଜିନିୟର ପଦବୀ ଗ୍ରହଣ କରିଥିଲେ ସେ ଆଶା ଭାଙ୍ଗି ଚୂରମାର ହୋଇଗଲା । ସେ କୌଣସି ଅର୍ଥ ଲାଳସାରେ ଚାକିରି କରିନଥିଲେ । ସେ ସର୍ତ୍ତ ରଖିଥିଲେ ତାଙ୍କର ଅଭିଜ୍ଞତା ଓ ସାମର୍ଥ୍ୟ ପ୍ରଦର୍ଶନ କରିବା ପାଇଁ ସମସ୍ତ ସୁବିଧା ଉପଲବ୍‌ଧ ହେବା ଆବଶ୍ୟକ । କିନ୍ତୁ ତାର ଫଳ ହେଲା ବିପରୀତ । ତାଙ୍କର ପ୍ରଦତ୍ତ ଯୋଜନାଟି ନାମଞ୍ଜୁର ହୋଇଗଲା ଭାବି ଛଅମାସ ଛୁଟିନେଇ ଉତ୍ତର ଭାରତ ପରିଭ୍ରମଣରେ ଚାଲିଗଲେ ।

ଉତ୍ତର ଭାରତ ପରିଭ୍ରମଣ ଶେଷକରି ନିଜ କାର୍ଯ୍ୟାଳୟରେ ଯୋଗଦେଲେ । ସେ ଦେଖିଲେ ଯେ ତାଙ୍କର ପରିକଳ୍ପନା କାର୍ଯ୍ୟକାରୀ ହେବାପାଇଁ କୌଣସି ପଦକ୍ଷେପ

ନିଆଯାଇନାହିଁ । ସେ ନିୟମ ଅନୁସାରେ କାର୍ଯ୍ୟକଲେ । ଗତାନୁଗତ ପନ୍ଥା ଅନୁସରଣ କରି ଅଫିସ ଠିକ୍ ସମୟରେ ଆସି ଠିକ୍ ସମୟରେ ଗଲେ । ଏପରିକି ଅବସର ନେବା ପାଇଁ ଚିନ୍ତାକଲେ । ଏହି ସମସ୍ତ ଘଟଣା ମହାରଜାଙ୍କ ଦୃଷ୍ଟିକୁ ଉପେକ୍ଷା କରିପାରିଲ ନାହିଁ । ମହାରଜା ଦିନେ ବିଶ୍ୱେଶ୍ୱରୟାଙ୍କୁ ଡ଼କାଇ ଏ ସମସ୍ତ ବିଷୟ ପଚ଼ରି ବୁଝିଲେ । ବିଶ୍ୱେଶ୍ୱରୟା ତାଙ୍କର ପରିକଳ୍ପନାକୁ ମହାରଜା କାର୍ଯ୍ୟକାରୀ ନ କରଇବା ହିଁ ଏହାର ମୁଖ୍ୟକାରଣ ବୋଲି କହିଥିଲେ । ମହାରଜା ତାଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଲେ ଯେ ତାଙ୍କର ସମସ୍ତ ପରିକଳ୍ପନା ଗୁଡ଼ିକୁ ଅବିଳମ୍ବେ ଅନୁମୋଦନ କରିବେ । ସେ ତାଙ୍କର କାର୍ଯ୍ୟରେ ଆଗେଇ ଗ୍ଲଲନ୍ତୁ ।

ମହୀଶୂର ରଜ୍ୟ ସେତେବେଳେ ବିଶେଷ ଅସୁବିଧାରେ ପଡ଼ିଥାଏ । କୋଲର ସୁନାଖଣି ପାଇଁ ବିଦ୍ୟୁତ୍ ଯୋଗାଣ ଏକ ବଡ଼ ସମସ୍ୟା ଥିଲ । ମହୀଶୂର ସରକାର ଏବଂ ସୁନାଖଣି ତରଫରୁ ଜନ୍ ଟେଲର ଆଣ୍ଡ ସନସ୍‌ଙ୍କ ମଧ୍ୟରେ ଏକ ଚୁକ୍ତିନାମା ୧୯୦୨ ମସିହାରୁ ସ୍ୱାକ୍ଷରିତ ହୋଇଥିଲ । ସେହି ଚୁକ୍ତି ଅନୁସାରେ ସରକାର ଏକ ନିର୍ଦ୍ଦିଷ୍ଟ ପରିମାଣର ବିଦ୍ୟୁତ୍ ଶକ୍ତି ସୁନାଖଣି କମ୍ପାନିକୁ ଯୋଗାଇ ଦେବ, ଯଦି ଯୋଗାଇ ଦେଇ ନପାରିବ ତାହାହେଲେ ତାକୁ ଜୋରିମାନା ଦେବାକୁ ପଡ଼ିବ । ଏହି ଚୁକ୍ତି ଅନୁସାରେ ୧୯୦୩ ମସିହାରୁ ସରକାର ୩୮୦୦୦ ଟଙ୍କା ଜୋରିମାନା କମ୍ପାନିକୁ ଦେଇ କ୍ଷତି ସହି ସାରିଥିଲେ । ସୁନାଖଣି କମ୍ପାନି ସରକାରଙ୍କୁ ଜଣାଇ ଦେଇଥିଲ ଯେ ଯଦି ନିର୍ଦ୍ଦିଷ୍ଟ ପରିମାଣର ଶକ୍ତି ତାଙ୍କୁ ଯୋଗାଇ ଦିଆନଯାଏ, ସେମାନେ ଶକ୍ତି ଉତ୍ପାଦନ ପାଇଁ ତାଙ୍କର ନିଜସ୍ୱ ଶକ୍ତି କେନ୍ଦ୍ର ପ୍ରତିଷ୍ଠା କରିବେ ।

ଏହି ସମସ୍ତ ବିଷୟ ବିଗ୍ଭରକୁ ନେଇ ସାର୍ ବିଶ୍ୱେଶ୍ୱରୟା କାବେରୀ ନଦୀବନ୍ଧ ଯୋଜନା କାର୍ଯ୍ୟକାରୀ କରିବାକୁ ପ୍ରବର୍ତ୍ତାଇ ଥିଲେ । ଏହାର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହେଲେ ସରକାର ୧୯୧୫ ମସିହା ଜୁଲଇ ସୁଦ୍ଧା କୋଲର ସୁନାଖଣି ପାଇଁ ଆବଶ୍ୟକ ପଡୁଥିବା ସମସ୍ତ ବିଦ୍ୟୁତ୍ ଶକ୍ତି ଯୋଗାଇ ଦେଇ ପାରିବେ ।

କାବେରୀ ନଦୀରେ ବନ୍ଧ ବାନ୍ଧିଲେ ଯେଉଁ ଯେଉଁ ରଜ୍ୟ ମଧ୍ୟରେ କାବେରୀ ପ୍ରବାହିତ, ସେହି ସେହି ରଜ୍ୟ ମଧ୍ୟରେ ଏକ ଚୁକ୍ତିନାମା ସ୍ୱାକ୍ଷରହେବା ଅତ୍ୟନ୍ତ ଜରୁରୀ । ମାଦ୍ରାଜ ପ୍ରଦେଶ ମଧ୍ୟଦେଇ ଏହା ପ୍ରବାହିତ ହେଉଥିବାରୁ ମାଦ୍ରାଜ ସରକାରଙ୍କ ସହ ଚୁକ୍ତି ହେବା ଆବଶ୍ୟକ । କାବେରୀ ନଦୀରେ ଅନ୍ୟଏକ ପରିକଳ୍ପନା ମେଟୁରଠାରେ ହେବାପାଇଁ ଯୋଜନା ଗ୍ଭଲିଥାଏ । ମାଦ୍ରାଜର ମେଟୁର ବହୁମୁଖୀ ଯୋଜନା ମହୀଶୂର ରଜ୍ୟର କୃଷ୍ଣରଜ ସାଗରଠାରୁ ଅତ୍ୟନ୍ତ ବିଶାଳ । ମେଟୁର ପ୍ରକଳ୍ପଟି କାବେରୀର ତଳ ଅଞ୍ଚଳରେ ଥିବାରୁ କନ୍ନମ୍ବଡ଼ି ବନ୍ଧ ନିର୍ମିତ ହେଲେ, ତା'ମଧ୍ୟକୁ ଅଧିକ ଜଳ ପ୍ରବାହିତ ହେବା କଷ୍ଟସାଧ୍ୟ ।

ମହୀଶୂର ସରକାର କୃଷ୍ଣରଜ ସାଗର ବନ୍ଧ ପ୍ରକଳ୍ପର ନକ୍ସା ମାଦ୍ରାଜ ସରକାରଙ୍କୁ ଯୋଗାଇ ଦେଇଥିଲେ । ସେହି ନକ୍ସାରେ ପ୍ରକଳ୍ପଟିର ଲମ୍ବ ୮୬୦୦ ଫୁଟ

ଓ ଉଚ୍ଚତା ୧୩୦ ଫୁଟ ଏବଂ ଏହାର ଜଳଧାରଣର ଶକ୍ତି ୪୮୦୦୦ ନିୟୁତ ଘନଫୁଟ ଲେଖାଥିଲା । ସେତେବେଳେ ମାଦ୍ରାଜ ସରକାର ଏତେ ଉଚ୍ଚ ବନ୍ଧ ନିର୍ମାଣ କରିବାରେ ଆପତ୍ତି କଲେ ।

କୃଷ୍ଣରାଜ ସାଗର ବନ୍ଧ ଯୋଜନା (କନମ୍ବାଡ଼ି ବନ୍ଧ) ବିଶ୍ୱେଶ୍ୱରୟାଙ୍କ ୧୩୦ ଫୁଟ (୩୯.୬୨୪ ମିଟର) ଉଚ୍ଚତାର ବନ୍ଧ ଆଉ ଅନୁମୋଦିତ ହୋଇ ହୋଇ ପାରିଲା ନାହିଁ । ଏହା ଏକ ଆନ୍ତଃ ରାଜ୍ୟ ସମସ୍ୟା ରୂପେ ଉଭାହେଲା । ଦିଲ୍ଲୀରେ ତତ୍କାଳୀନ ଭାଇସରୟ ଲର୍ଡ ହାର୍ଡିଞ୍ଜ ଏହି ବନ୍ଧର ଉଚ୍ଚତାକୁ ୮୦ ଫୁଟ (୨୪.୩୮୪ ମିଟର)କୁ କମାଇ ଦେଇ ଏହି ବନ୍ଧ ଯୋଜନାକୁ ଅନୁମୋଦନ କଲେ । ସେମାନଙ୍କ ମତରେ ଏତେ ଉଚ୍ଚ ବନ୍ଧ କରିବାର କୌଣସି ଆବଶ୍ୟକତା ନଥିଲା । ଉଚ୍ଚତା କମାଇ ଦେବା ଦ୍ୱାରା ବହୁ ଅର୍ଥ ସଞ୍ଚୟ କରାଯାଇ ପାରିବ ।

ବିଶ୍ୱେଶ୍ୱରୟା ୧୯୧୧ ମସିହା ମାର୍ଚ୍ଚ ୫ ତାରିଖରେ ଯେଉଁ ପ୍ରଥମ ପ୍ରୋଜେକ୍ଟ ରିପୋର୍ଟ ଦାଖଲ କରିଥିଲେ ସେହି ବିଷୟରେ ସୂଚନା ଦେଇ ସେ କହିଥିଲେ "Once commenced, the scheme opens up a vista of possibilities of ever-increasing value to the state. But the speed with which developments take place will not be spontaneous, but must depend entirely on the energy and foresight displayed by the responsible Government in improving the market for power and extending irrigation. Having regard to the indirect revenue to the state by the increase in the productive power of the country, a work like this would be justified even if it paid no more than 3%. But the promise of extraordinary direct returns from power at commencement, and the opportunity it affords of building up a great irrigation project from the sale proceeds of power, form a combination of advantages rarely vouchsafed to such undertakings in any part of the world".

ଏହି ପ୍ରକଳ୍ପଟି ସମ୍ପୂର୍ଣ୍ଣ ହେଲେ ରାଜ୍ୟର ଉନ୍ନତି ଆପେ ଆପେ ହୋଇ ଯିବ ନାହିଁ । ସେଥିପାଇଁ ଶକ୍ତି ଓ ଜଳସେଚନର ପ୍ରକୃତ ବିନିଯୋଗ ପାଇଁ ସରକାରଙ୍କର ସାମର୍ଥ୍ୟ ଏବଂ ଦୂରଦୃଷ୍ଟି ହିଁ କାର୍ଯ୍ୟ କରିବ ।

୧୯୧୧ ମସିହା ନଭେମ୍ବର ମାସରେ ବିଶ୍ୱେଶ୍ୱରୟା କୃଷ୍ଣରାଜ ସାଗର ବନ୍ଧର ମୂଳଭିତ୍ତି ଖୋଳାଇବା କାର୍ଯ୍ୟ ଆରମ୍ଭ କରିଥିଲେ । ଏହି ଖୋଳାଇ କାର୍ଯ୍ୟ ଦୁଇବର୍ଷ ସମୟ ଲାଗିଥିଲା । ବନ୍ଧର ଉଚ୍ଚତା ୮୦ ଫୁଟ ( ୨୪.୩୮୪ ମିଟର ) ପାଇଁ ଅନୁମତି ମିଳିଥିଲା କିନ୍ତୁ ବିଶ୍ୱେଶ୍ୱରୟା ୧୨୫ ଫୁଟ ( ୩୮.୧୦ ମିଟର ) ଉଚ୍ଚତା ବନ୍ଧ ପାଇଁ ଯେତିକି ମୂଳଭିତ୍ତି ଆବଶ୍ୟକ ଅର୍ଥାତ୍ ୧୧ ଫୁଟ (୩.୩୫ ମିଟର) ଓସାରର ମୂଳଭିତ୍ତି ଖୋଳେଇ କାର୍ଯ୍ୟ ଆରମ୍ଭ କଲେ । ଏହି କାର୍ଯ୍ୟରେ ୬୫ ଲକ୍ଷ ଟଙ୍କା ଖର୍ଚ୍ଚ ହେଲା । ଯଦି ବନ୍ଧ ଉଚ୍ଚତା ୮୦ ଫୁଟ ( ୨୪.୩୮୪ମି ) ହୋଇଥାନ୍ତା ତାହାହେଲେ ଏପରି ମୂଳଭିତ୍ତି କାର୍ଯ୍ୟ ବେକାର ହୋଇଥାନ୍ତା । କିନ୍ତୁ ବିଶ୍ୱେଶ୍ୱରୟାଙ୍କ ଦୂରଦୃଷ୍ଟି ଅଧିକ । ଏହିକାର୍ଯ୍ୟ ଚାଲିଥିବା ସମୟରେ ସେ ବନ୍ଧର ଉଚ୍ଚତା ଆହୁରି ୫୦ ଫୁଟ ( ୧୫.୨୪ ମିଟର ) ବଢ଼ାଇବାକୁ କେନ୍ଦ୍ର ସରକାରଙ୍କ ସହିତ ମହୀଶୂର ରାଜଦରବାର ଜରିଆରେ ପତ୍ରାଳାପ କରୁଥିଲେ । ମଝିରେ ମଝିରେ ଦିଲ୍ଲୀ ଯାଇ ସମ୍ପୃକ୍ତ କର୍ମକର୍ତ୍ତାମାନଙ୍କୁ ବୁଝାଉଥିଲେ । ତାଙ୍କର ଆତ୍ମପ୍ରତ୍ୟୟ ଓ ସାହସ ଏତେ ଥିଲା ଯେ ସେ ମୂଳ ନକ୍ସା ଅନୁସାରେ କାର୍ଯ୍ୟରେ ଲାଗିଥିଲେ ।

ମହୀଶୂର ରାଜ୍ୟର ଉନ୍ନୟନ ପାଇଁ ତାଙ୍କୁ ଅଖଣ୍ଡ କ୍ଷମତା ଦିଆଯାଇଥିବାରୁ ବିଶ୍ୱେଶ୍ୱରୟା ବହୁତ ଖୁସିଥିଲେ । ସେ ୧୯୦୯ ମସିହା ନଭେମ୍ବରରୁ ୧୯୧୨ ମସିହା ନଭେମ୍ବର ପର୍ଯ୍ୟନ୍ତ ମୁଖ୍ୟ ଯନ୍ତ୍ରୀ ଥିବା ସମୟରେ ପୂର୍ତ୍ତ ବିଭାଗରେ ଅନେକ ସଂଶୋଧନ କରିଥିଲେ । ଥରେ କେତେ ଗୁଡ଼ିଏ ପଦବୀ ପୂରଣ ପାଇଁ ସାକ୍ଷାତକାର ଡ଼କା ହୋଇଥିଲା । ଅଧୀକ୍ଷଣ ଯନ୍ତ୍ରୀ କିମ୍ବା କୌଣସି ବିଭାଗର ମୁଖ୍ୟଙ୍କର କର୍ତ୍ତବ୍ୟ ହେଲା ସେ ଦରଖାସ୍ତ ଗୁଡ଼ିକ ଶିକ୍ଷା ଓ ଯୋଗ୍ୟତା ଭିତ୍ତିରେ କ୍ରମାନ୍ୱୟରେ ସଜାଇ ଚିଫ୍ ଇଞ୍ଜିନିୟରଙ୍କ ନିକଟକୁ ପଠାଇବା । କିନ୍ତୁ ସେମାନେ ତାଲିକାଟିକୁ କେଉଁ ପ୍ରାର୍ଥୀକୁ କିଏ ସୁପାରିଶ କରିଛି ଓ କେଉଁମାନଙ୍କ ସଙ୍ଗେ ତାଙ୍କର ଘନିଷ୍ଠ ସମ୍ପର୍କ ଅଛି ସେହି କ୍ରମରେ ସଜାଇ ପଠାଇଲେ । ବିଶ୍ୱେଶ୍ୱରୟା ସେଗୁଡ଼ିକୁ ଫେରାଇ ଦେଲେ ଏବଂ କହିଲେ ପୁନର୍ବାର ସେ ତାଲିକାକୁ ଶିକ୍ଷା, ଅଭିଜ୍ଞତା ଓ ଯୋଗ୍ୟତା ଭିତ୍ତିରେ ତିଆରି କରି ଆଣିବାକୁ ।

ତିନିବର୍ଷର ଅଭିଜ୍ଞତା ଦୂରଦୃଷ୍ଟି ଓ କାର୍ଯ୍ୟଦକ୍ଷତା ବିଚାରକୁ ନେଇ ମହାରାଜା ବିଶ୍ୱେଶ୍ୱରୟାଙ୍କୁ ଦେବାନ୍ ବା ପ୍ରଧାନ ମନ୍ତ୍ରୀ ଭାବରେ ନିଯୁକ୍ତ କଲେ । ତାଙ୍କ ଅଧୀନରେ ଅନ୍ୟ ତିନିଜଣ ମନ୍ତ୍ରୀ ଥିଲେ । ସେତେବେଳେ ମହାରାଜା ବ୍ରିଟିଶ୍ ସରକାରଙ୍କ ଅନୁମୋଦନ କ୍ରମେହିଁ ମନ୍ତ୍ରୀ ଓ ପ୍ରଧାନ ମନ୍ତ୍ରୀ ନିଯୁକ୍ତ କରୁଥିଲେ । ସଦାସର୍ବଦା ସିଭିଲ ଅଫିସରଙ୍କୁ ହିଁ ଦେୱାନ ନିଯୁକ୍ତ କରୁଥିଲେ ମାତ୍ର ବିଶ୍ୱେଶ୍ୱରୟାହିଁ ଏହାର ବ୍ୟତିକ୍ରମ । କେବଳ ସେ ଜଣେ ଜଳସେଚନ ଯନ୍ତ୍ରୀ ନଥିଲେ ସେ ଥିଲେ ଜଣେ ସଚ୍ଚୋଟ ଓ ବୁଦ୍ଧିମାନ ବ୍ୟକ୍ତି ।

—*—

ନବମ ପରିଚ୍ଛେଦ :

# ମହୀଶୂର ଦେଓ୍ୱାନ ବିଶ୍ୱେଶ୍ୱରାୟା

ବିଶ୍ୱେଶ୍ୱରାୟା ୧୯୧୨ ମସିହା ନଭେମ୍ବର ମାସରେ ମହୀଶୂର ରାଜ୍ୟର ଦେଓ୍ୱାନ ରୂପେ ଯୋଗଦେଲେ । ସେ ତାଙ୍କର ପୂର୍ବ ଅଭିଜ୍ଞତାରୁ ଯନ୍ତ୍ରୀହୋଇ ଉନ୍ନୟନର ଯନ୍ତ୍ରଣା ଲାଘବ କରୁଥିଲେ କିନ୍ତୁ ବର୍ତ୍ତମାନ ସାଧାରଣ ଜନତାଙ୍କର ଦୁଃଖ ଯନ୍ତ୍ରଣା ଦୂର କରିବା ପାଇଁ ସମୟ ସୁବିଧା ଉପସ୍ଥିତ ହେଲା । ତାଙ୍କ ନିକଟରେ କେତେକ ସମସ୍ୟା ଥିଲା । ୧—ଶିକ୍ଷାର ଅଭାବ ୨—ସଙ୍ଗଠନର ଅଭାବ ୩—ନେତାମାନଙ୍କର କୌଣସି ଯୋଜନାବଦ୍ଧ କାର୍ଯ୍ୟର ଅଭାବ ୪—ଅର୍ଥନୈତିକ ଦୁଃଖ ଦୁର୍ଦ୍ଦଶା ସହ ଉନ୍ନୟନ କାର୍ଯ୍ୟର ମାନ୍ଦା ଅବସ୍ଥା ।

ପ୍ରଥମ କଥା ହେଲା ଶିକ୍ଷାର ଅଭାବ । ସେ ଦେଖିଲେ ଯେ ରାଜ୍ୟର ହାରାହାରି ଏକ ଶହ ଲୋକମାନଙ୍କ ମଧ୍ୟରେ ମାତ୍ର ଛଅଜଣ ସାକ୍ଷର ଏବଂ ସେମାନେ ଲେଖାପଢ଼ା ମାତ୍ର କରିପାରନ୍ତି । ଅନ୍ୟମାନେ ସମସ୍ତେ ନିରକ୍ଷର । ତାଙ୍କର ବିଦେଶ ଗସ୍ତ ସମୟରେ ସେ ଅନୁଭବ କରିଛନ୍ତି ଯେ ପାଶ୍ଚାତ୍ୟ ଦେଶମାନେ କାହିଁକି ଏତେ ଉନ୍ନତି କରିପାରିଛନ୍ତି । ଏହାର ମୂଳରେ ରହିଲା କେବଳ ଉନ୍ନତ ଶିକ୍ଷା । ଶିକ୍ଷାହିଁ ସର୍ବମହୌଷଧି । ସେ ଦେଶମାନଙ୍କରେ ଅଶିକ୍ଷିତ ସଂଖ୍ୟା ବହୁତ କମ୍ । ତେଣୁ ସେମାନେ ଏତେ ଉନ୍ନତ ।

ସେ ଜାପାନ ଦେଶର ଉଦାହରଣ ଦେଇ କହିଛନ୍ତି ଯେ, ସେଠାରେ ସ୍କୁଲମାନଙ୍କରେ ଚରିତ୍ର ଗଠନ ଓ ଶୃଙ୍ଖଳା ରକ୍ଷାପାଇଁ ସାମରିକ ଶିକ୍ଷା ଦିଆଯାଏ । ଶିକ୍ଷାପୁସ୍ତକମାନଙ୍କରେ ଦେଶଭକ୍ତି, ରାଜଭକ୍ତି, ବିଶ୍ୱସ୍ତତା, ଉତ୍ତମ ବ୍ୟବହାର ଶିକ୍ଷା ସନ୍ନିବେଶିତ । ତେଣୁ ପୂର୍ଣ୍ଣାଙ୍ଗ ଶିକ୍ଷା ସେମାନଙ୍କୁ ଉତ୍ତମ ନାଗରିକ କରି ଗଢ଼ିତୋଳେ । ଶିକ୍ଷାନୁଷ୍ଠାନମାନଙ୍କରେ ଉପସ୍ଥାନ ବା ଛାତ୍ରଛାତ୍ରୀମାନଙ୍କୁ ପହଞ୍ଚାଇବାର ଦାୟିତ୍ୱ ହେଲା—ସେ ଦେଶ ସରକାରଙ୍କର । ଜାପାନର ଛାତ୍ରଛାତ୍ରୀମାନେ ଆମଦେଶର ଛାତ୍ରଛାତ୍ରୀମାନଙ୍କ ପରି ଗରିବ । ତାଙ୍କର ପିତାମାତାଙ୍କର ମଧ୍ୟ କାଗଜ ବହି କିଣିବା ପାଇଁ ପଇସା ନଥାଏ । ମାତ୍ର ଶିକ୍ଷକମାନେ ନୋଟ୍ ମାଧ୍ୟମରେ ଶିକ୍ଷାଦାନ କରିଥାନ୍ତି । ସେଠାରେ ବ୍ୟବହାରିକ ପ୍ରଶିକ୍ଷଣ ଉପରେ ବିଶେଷ ଗୁରୁତ୍ୱ ଦିଆଯାଏ । ସେଠାରେ ବିଶ୍ୱବିଦ୍ୟାଳୟ ଡିଗ୍ରି ଉପରେ କେବଳ ଚାକିରି ନିର୍ଭର କରେନାହିଁ । ନିର୍ଭର କରେ ବ୍ୟବହାରିକ ଜ୍ଞାନ ଉପରେ । ସେ ଆମ ଦେଶରେ ସେହିପରି ହେବା ଚାହୁଁଥିଲେ । ଆମ ଦେଶରେ ସାମରିକ ଶିକ୍ଷା ବାଧ୍ୟତାମୂଳକ ହେବା ଦରକାର ।

ବିଶ୍ୱେଶ୍ୱରୟା ଦେଓ୍ୱାନ ହେଲବେଳେ ସମଗ୍ର ରାଜ୍ୟରେ ମାତ୍ର ୪୫୦୦ ପ୍ରାଥମିକ ବିଦ୍ୟାଳୟ ଥିଲା ଏବଂ ମୋଟରେ ୧ ଲକ୍ଷ ୪୦ ହଜାର ଛାତ୍ରଛାତ୍ରୀ ସେଥିରେ ଅଧ୍ୟୟନ କରୁଥିଲେ । ସେ ଦେଓ୍ୱାନ ହେବାର ୬ ବର୍ଷ ମଧ୍ୟରେ ଆହୁରି ଦୁଇହଜାର ପ୍ରାଥମିକ ବିଦ୍ୟାଳୟ ଖୋଲିଲା ଏବଂ ସେଥିରେ ୩ ଲକ୍ଷ ୬୬ ହଜାର ଛାତ୍ରଛାତ୍ରୀ ଅଧ୍ୟୟନ କଲେ । ମହୀଶୂର ରାଜ୍ୟରେ ପ୍ରଥମେ ସେ ପ୍ରାଥମିକ ଶିକ୍ଷାକୁ ବାଧ୍ୟତାମୂଳକ କରିଥିଲେ । ସେ ଏହାକୁ ୬୮ ଗୋଟି କେନ୍ଦ୍ରରେ ପ୍ରଥମେ ପରୀକ୍ଷାମୂଳକ ଭାବେ ଆରମ୍ଭ କଲେ । ପରେ ପରେ ଏହାକୁ ଆହୁରି ୧୭୦ ଗୋଟି କେନ୍ଦ୍ରକୁ ସମ୍ପ୍ରସାରଣ କରିଥିଲେ । ଛାତ୍ରଛାତ୍ରୀଙ୍କ ସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ଅଧିକ ଶିକ୍ଷକ ଓ ଅଧିକ ଶ୍ରେଣୀ ଗୃହର ଆବଶ୍ୟକତା ପଡୁଥାଏ । ଏହି ଆବଶ୍ୟକତା ପୂରଣ ପାଇଁ ସେ ପ୍ରଥମେ ଗ୍ରାଣ୍ଟ-ଇନ୍-ଏଡ୍ ପ୍ରଥା ପ୍ରଚଳନ କଲେ ।

ସେ ସମୟରେ ଦଳିତ ଓ ପଛୁଆବର୍ଗର ସ୍କୁଲରେ ପଢ଼ିବା ଛାତ୍ରଛାତ୍ରୀଙ୍କ ସଂଖ୍ୟା ନଗଣ୍ୟ ଥିଲା । ବିଶ୍ୱେଶ୍ୱରୟା ପ୍ରଥମେ ସେମାନଙ୍କ ପାଇଁ ସ୍ୱତନ୍ତ୍ର ଗ୍ରାଣ୍ଟର ବ୍ୟବସ୍ଥା କରିଥିଲେ ।

ରାଜ୍ୟରେ ନାରୀଶିକ୍ଷା ସମ୍ପୂର୍ଣ୍ଣ ଅବହେଳିତ ଅବସ୍ଥାରେ ଥିଲା । ପ୍ରଥମେ ପ୍ରଥମେ ଝିଅପିଲାଟିଏ ସ୍କୁଲକୁ ପଢ଼ିଯିବା ଏକ ଆଶ୍ଚର୍ଯ୍ୟଜନକ ଘଟଣା ଥିଲା । ବାଳିକାମାନଙ୍କ ପାଇଁ ଗୋଟିଏ ହେଲେ ବାଳିକା ବିଦ୍ୟାଳୟ ନଥିଲା । ସେ ସେଥିପାଇଁ ସ୍ୱତନ୍ତ୍ର ଧ୍ୟାନ ଦେଲେ । ମହୀଶୂରରେ ଥିବା ମହାରାଣୀ କଲେଜକୁ ପ୍ରଥମ ଶ୍ରେଣୀ କଲେଜକୁ ଉନ୍ନୀତ କଲେ । ସେ କଲେଜରେ ୧୯୧୭ ମସିହାରେ କଳାରେ ସ୍ନାତକ ଡ଼ିଗ୍ରି ଖୋଲିଥିଲେ । ସେ ସେଠାରେ ଏକ ହଷ୍ଟେଲ ପ୍ରତିଷ୍ଠା କଲେ । ରାଜ୍ୟର ବିଭିନ୍ନ ଅଞ୍ଚଳରୁ ଛାତ୍ରୀମାନେ ଆସି ଅନ୍ତେବାସୀ ଛାତ୍ରୀ ଭାବରେ ଅଧ୍ୟୟନ କଲେ । ପାଞ୍ଚବର୍ଷ ମଧ୍ୟରେ ନାରୀଶିକ୍ଷା ଦୁଇଗୁଣ ହୋଇଗଲା । ନାରୀମାନଙ୍କର ସାକ୍ଷର ସଂଖ୍ୟା ଶହେଜଣରେ ୫ ଜଣ ହୋଇଗଲା ।

ବିଶ୍ୱେଶ୍ୱରୟା ଭଲଭାବରେ ଜାଣିଥିଲେ ଯେ କେବଳ ସାଧାରଣ ଶିକ୍ଷାପ୍ରସାର ଦ୍ୱାରା ଦେଶର ଉନ୍ନତି ହୋଇପାରିବ ନାହିଁ । ଲୋକମାନଙ୍କୁ ଏପରି ଶିକ୍ଷା ଦିଆଯିବା ଆବଶ୍ୟକ ଯାହାଦ୍ୱାରା ସେମାନେ କାମଧନ୍ଦା ପାଇ ଦେଶର ଅର୍ଥନୈତିକ ବିକାଶରେ ସହାୟକ ହୋଇପାରିବେ । ସେତେବେଳେ ବୈଷୟିକ, ବାଣିଜ୍ୟଭିତ୍ତିକ ଓ ସାମାଜିକ ଶିକ୍ଷା ପ୍ରାୟ ନଥିଲା କହିଲେ ଚଳେ । ସେ ଛୋଟ ଛୋଟ ଚାଷୀମାନଙ୍କ ପାଇଁ କନ୍ନଡ଼ ଭାଷାରେ ଏକ ସଂକ୍ଷିପ୍ତ ପାଠ୍ୟକ୍ରମ ପ୍ରବର୍ତ୍ତନ କରିଥିଲେ । ସେ ଭାରତରେ କୌଣସିଠାରେ ଶୁଣାନଥିବା କେତେକ ପାଠ୍ୟକ୍ରମ ପ୍ରବର୍ତ୍ତନ କରିଥିଲେ ଯଥା— ଛୋଟ ଛୋଟ ଦୋକାନୀମାନଙ୍କ ପାଇଁ ପ୍ରାଥମିକ ହିସାବ କିପରି ରଖାଯାଏ, ବ୍ୟାଙ୍କ ବିଷୟରେ ସାଧାରଣ ଜ୍ଞାନ, ବାଣିଜ୍ୟ, ଭୂଗୋଳ, ସର୍ଟହ୍ୟାଣ୍ଡ ଓ ଟାଇପ ରାଇଟିଙ୍ଗ ବିଷୟ ଶିକ୍ଷାର ପ୍ରବର୍ତ୍ତନ କଲେ ।

ସବୁଜିଲ୍ଲାର ସଦର ମହକୁମାଠାରେ ଗୋଟିଏ ଗୋଟିଏ ମେକାନିକାଲ ପ୍ରଶିକ୍ଷଣ ଅନୁଷ୍ଠାନ ଗଢା ହେଲା । ଯେଉଁମାନେ ବ୍ୟାପାର ଓ ବାଣିଜ୍ୟରେ ସମ୍ପୃକ୍ତ ସେମାନଙ୍କୁ ସନ୍ଧ୍ୟା ବେଳେ ପାଠ ପଢାର ସୁବିଧା କରାଗଲା । ସେମାନଙ୍କୁ ହିସାବ ରଖିବା, ବ୍ୟାଙ୍କ ଓ ଭୂଗୋଳ ପ୍ରଭୃତି ପଢ଼ିବାର ସୁଯୋଗ ଦିଆଗଲା । ବାଣିଜ୍ୟ ବିଷୟରେ ସ୍କୁଲମାନଙ୍କରେ ପାଠ୍ୟକ୍ରମର ସୁବିଧା କରାଗଲା । ପିଲାମାନଙ୍କ ପାଇଁ ଶିକ୍ଷାବୃତ୍ତିମାନ ଖଞ୍ଜି ଦିଆଗଲା । ବଣିକମାନଙ୍କୁ ବିଶେଷ ପ୍ରଶିକ୍ଷଣ ପାଇଁ ବିଦେଶକୁ ପଠାଗଲା ।

ଭାରତରେ କୃଷି ଅତି ଅବହେଳିତ ଅବସ୍ଥାରେ ଥିଲା । ଦେଶର ଲୋକ ସଂଖ୍ୟାର ୭୫ ଶତକଡ଼ା ଲୋକ କୃଷି ଉପରେ ନିର୍ଭର କରନ୍ତି । କୃଷିକୁ ବିଜ୍ଞାନ ଶ୍ରେଣୀରେ ଅନ୍ତର୍ଭୁକ୍ତ କରିବା ପାଇଁ ସାମାନ୍ୟତମ ଉଦ୍ୟମ ମଧ୍ୟ ହୋଇନଥିଲା । ଖାଦ୍ୟ ଶସ୍ୟରେ କିପରି ଆମ ଦେଶ ଆତ୍ମ ନିର୍ଭରଶୀଳ ହୋଇ ପାରିବ ବିଶ୍ୱେଶ୍ୱରୟା ତାର ଉପାୟ ଚିନ୍ତାକଲେ । ସେ ଯୁବକମାନଙ୍କୁ ଆଧୁନିକ କୃଷି ପ୍ରଣାଳୀରେ ଶିକ୍ଷା ଦେବାକୁ ଯୋଜନା କଲେ । ତାହା କୃଷି ପ୍ରତି ଶ୍ରଦ୍ଧା ବଢିବ ଏବଂ କୃଷି ବିଜ୍ଞାନରେ ଶିକ୍ଷାପ୍ରାପ୍ତ ଯୁବକମାନେ ଭାରତ ପରି ଏକ କୃଷି ପ୍ରଧାନ ଦେଶର ଆର୍ଥିକ ମେରୁଦଣ୍ଡକୁ ଦୃଢ଼ କରିପାରିବେ । କୃଷିର ଉନ୍ନତି ପାଇଁ ବିଶ୍ୱେଶ୍ୱରୟାଙ୍କୁ ସ୍ମରଣ କରାଯାଏ । କାରଣ ସେ ପ୍ରଥମେ କୃଷି ବିଜ୍ଞାନରେ ସ୍କୁଲ ପ୍ରତିଷ୍ଠା କରିଥିଲେ ଏବଂ ପରୀକ୍ଷା ମୂଳକ ଭାବେ କୃଷି ଫାର୍ମ ପ୍ରତିଷ୍ଠା କଲେ । ୧୯୧୩ ମସିହାରେ ବାଙ୍ଗାଲୋର ନିକଟ ହେବାଲ ଠାରେ ଗୋଟିଏ କୃଷି ବିଜ୍ଞାନର ସ୍କୁଲ ଆରମ୍ଭ କଲେ ଏବଂ ତତ୍ ସଂଲଗ୍ନ ଏକ ବଡ଼ କୃଷି ଫାର୍ମ ଚାଷୀମାନଙ୍କ ବିଶେଷ ଉନ୍ନତି ପାଇଁ ପ୍ରତିଷ୍ଠା କଲେ । କୃଷି ବିଜ୍ଞାନ ଛାତ୍ରମାନେ ଯାହା ପରୀକ୍ଷା କରି ନୂତନ ଉଦ୍ଭାବନ କରିବେ ତାର ସୁଫଳ ଚାଷୀମାନେ ପାଇପାରିବେ । ନୂତନ କୃଷି ଯନ୍ତ୍ରପାତି, ଚାଷର ନୂତନ ଉପକରଣମାନ ଚାଷୀମାନେ ବ୍ୟବହାର କରିପାରିବେ ଏବଂ ସେଗୁଡ଼ିକ ସଙ୍ଗେ ପରିଚିତ ହୋଇ ନିଜ ନିଜ ଜମିରେ ବ୍ୟବହାର କରିପାରିବେ ।

ସେ ଚାଷୀମାନଙ୍କୁ କୃଷିଫାର୍ମମାନ ପ୍ରତିଷ୍ଠା କରିବା ପାଇଁ ପ୍ରୋତ୍ସାହନ ଦେଲେ । ସରକାରଙ୍କର ନିଜ ଧନରେ କୃଷିର ଆଧୁନିକ ଉପକରଣ ଓ ଯନ୍ତ୍ରପାତି କିଣି ଚାଷୀମାନଙ୍କୁ ଦିଆଗଲା । ତାଙ୍କର ଉଦ୍ଦେଶ୍ୟ ଥିଲା ଦେଶର ବିଭିନ୍ନ ସ୍ଥାନରେ ଫାର୍ମମାନ ପ୍ରତିଷ୍ଠା ହେଲେ ସେ ଅଞ୍ଚଳର କୃଷକମାନେ ଚାଷରେ ଆତ୍ମନିର୍ଭରଶୀଳ ହୋଇପାରିବେ । ତାହାଦ୍ୱାରା କୃଷି ପ୍ରତି ସାଧାରଣରେ ଶ୍ରଦ୍ଧାବଢିବ ଏବଂ କୃଷି ବିଜ୍ଞାନର ଶିକ୍ଷିତ ଯୁବକମାନେ ଭାରତ ପରି ଏକ କୃଷିପ୍ରଧାନ ଦେଶର ଆର୍ଥିକ ମେରୁଦଣ୍ଡକୁ ଦୃଢ଼ କରି ପାରିବେ । ସେଥିପାଇଁ ସେ କୃଷି ବିଦ୍ୟାଳୟ ପ୍ରତିଷ୍ଠା କରି ଛାତ୍ରମାନଙ୍କୁ ଆଧୁନିକ କୃଷି ପ୍ରଣାଳୀରେ ଶିକ୍ଷା ଦେବାର ବ୍ୟବସ୍ଥା କଲେ ।

ବିଶ୍ୱେଶ୍ୱରୟା ରାଜ୍ୟରେ ଶିକ୍ଷା ପ୍ରସାର ଲାଗି ବହୁ ସ୍କୁଲ କଲେଜ ପ୍ରତିଷ୍ଠା କରି ମଧ୍ୟ ସେଥିରେ ସନ୍ତୁଷ୍ଟ ନଥିଲେ । ବାଙ୍ଗାଲୋରର ସେଣ୍ଟ୍ରାଲ କଲେଜ, ମହୀଶୂରର ମହାରାଜା କଲେଜ ଓ ମହାରାଣୀ କଲେଜ ଗୁଡ଼ିକ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ଅଧୀନରେ ପରିଚାଳିତ ହେଉଥିଲା । ମହୀଶୂରର ମହାରାଜା ଓ ମହାରାଣୀ କଲେଜ ଦୁଇଟିରେ, ଇତିହାସ, ମନୋବିଜ୍ଞାନ, ଦର୍ଶନ, ଅର୍ଥନୀତି ଓ ରାଜନୀତି ପଢ଼ାହେଉଥିଲା କିନ୍ତୁ ବାଙ୍ଗାଲୋରର ସେଣ୍ଟ୍ରାଲ କଲେଜରେ ବିଜ୍ଞାନ ଓ ଗଣିତ ବିଷୟ ଗୁଡ଼ିକ ଅଧିକ ପଢ଼ା ହେଉଥିଲା । ଏହି କଲେଜ ଗୁଡ଼ିକ ରାଜ୍ୟ ବାହାରର ଏକ ବିଶ୍ୱବିଦ୍ୟାଳୟ ଦ୍ୱାରା ପରିଚାଳିତ, ହେଉଥିବାରୁ ଉଚ୍ଚ ଶିକ୍ଷାର କୌଣସି ବୃଦ୍ଧି କିମ୍ବା ଉନ୍ନତି ହୋଇପାରୁ ନ ଥିଲା । ବିଶ୍ୱେଶ୍ୱରୟା ଚାହିଁଥିଲେ ନିଜ ରାଜ୍ୟରେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲେ ସେ ବିଭିନ୍ନ ପାଠ୍ୟକ୍ରମଗୁଡ଼ିକ ସ୍ଥିର କରିବ ଏବଂ ଶିକ୍ଷାର ମାନ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ଶିକ୍ଷାର ପ୍ରସାର ହେବ ।

ବିଶ୍ୱେଶ୍ୱରୟା ଦେଓ୍ୱାନ ହେବା ପୂର୍ବରୁ ଭାରତରେ ଅନ୍ୟାନ୍ୟ ସ୍ଥାନରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଆନ୍ଦୋଳନ ଚାଲିଥାଏ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ପଣ୍ଡିତ ମଦନ ମୋହନ ମାଲବ୍ୟ ୧୯୦୬ ମସିହାରୁ ଆନ୍ଦୋଳନ ଚଳାଇ ଆସିଥିଲେ । ସେଥିପାଇଁ ଅର୍ଥଦାନ ଆକାରରେ ସଂଗୃହୀତ କରି ତିନି ଲକ୍ଷ ଟଙ୍କା ବ୍ୟାଙ୍କରେ ରଖି ବିଶ୍ୱବିଦ୍ୟାଳୟର ଭିତ୍ତିପ୍ରସ୍ତର ସ୍ଥାପନ କରିବାକୁ ସ୍ଥିର କରିଥିଲେ । ସେତେବେଳେ ଆଲିଗଡ଼ ମୁସଲିମ ବିଶ୍ୱବିଦ୍ୟାଳୟ ସ୍ଥାପନର ଚୂଡ଼ାନ୍ତ ପର୍ଯ୍ୟାୟର କାମ ଚାଲିଥାଏ ।

ଆନିବେଶାନ୍ତଙ୍କ ନାମ ସେତେବେଳେ ଚାରିଆଡେ ଶୁଣାଯାଉଥାଏ । ଭାରତୀୟ ଜୀବନ ଧାରା ସହିତ ସେ ନିଜକୁ ସମ୍ପୂର୍ଣ୍ଣ ରୂପେ ସାମିଲ କରିଦେଇଥାନ୍ତି । ହିନ୍ଦୁଧର୍ମ ପ୍ରତି ତାଙ୍କର ପ୍ରଗାଢ଼ ଶ୍ରଦ୍ଧା ଓ ଭକ୍ତି ତାଙ୍କୁ ଭାରତରେ ଯଶସ୍ୱିନୀ କରିଥାଏ । ସେ କେନ୍ଦ୍ରୀୟ ହିନ୍ଦୁ କଲେଜ ସ୍ଥାପନ କରିଥିଲେ । ଏହା ସାରା ପୃଥିବୀରେ ଜ୍ଞାନର ଏକ ପୀଠସ୍ଥଳୀ ରୂପେ ସମ୍ମାନ, ତଥା ଖ୍ୟାତି ଅର୍ଜନ କରିସାରିଥାଏ । ବହୁ ବିଦ୍ୱାନ୍ ଓ ପ୍ରଚଣ୍ଡ ଯଶସ୍ୱୀ ବ୍ୟକ୍ତି ଏଠାରେ ଶିକ୍ଷା ଦାନ ଦେବା ପାଇଁ ଶ୍ରଦ୍ଧାର ସହିତ ନିଜକୁ ସମର୍ପଣ କରିଥାନ୍ତି । ବିଦେଶରୁ ବହୁ ଶିକ୍ଷାବିଦ୍ ଏଠାରେ ଶିକ୍ଷାଦାନ ପାଇଁ ସମ୍ମାନ ଦୃଷ୍ଟିରୁ ଆସିଥାନ୍ତି । ସେମାନେ ପାରିଶ୍ରମିକ ଗ୍ରହଣ କରନ୍ତି ନାହିଁ । ଆନିବେଶାନ୍ତ ଏହି କଲେଜକୁ ଏକ ବିଶ୍ୱବିଦ୍ୟାଳୟକୁ ଉନ୍ନୀତ ପରି ଏହାର ନାମ "ଭାରତ ବିଶ୍ୱବିଦ୍ୟାଳୟ" ( University of India ) ରଖିବାକୁ ସ୍ଥିର କରିଥିଲେ ।

କାଶୀର ଭାରତଧର୍ମ ମହାମଣ୍ଡଳ, ଦରଭଙ୍ଗା ମହାରାଜାଙ୍କ ନେତୃତ୍ୱରେ ଏକ "ସନାତନ ଧର୍ମ ବିଶ୍ୱବିଦ୍ୟାଳୟ" ସ୍ଥାପନ କରିବା ପାଇଁ ଯୋଜନା ଆରମ୍ଭ

କଲେ । ମଦନମୋହନ ମାଲବ୍ୟ ଏହା ଜାଣିବା ପରେ ସେମାନଙ୍କ ସହିତ ଯୋଗସୂତ୍ର ରକ୍ଷା କରି ସେହି ସବୁ ବିଦ୍ୟାଳୟକୁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ସହିତ ସାମିଲ କଲେ । ସେ ଦୃଢ ଯୁକ୍ତି ଉପସ୍ଥାପନ କରି କହିଥିଲେ ଯେ ସମାନ ଲକ୍ଷ୍ୟ ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ଏକ ସମୟରେ ତିନୋଟି ଅନୁଷ୍ଠାନ ସ୍ଥାପନ କରିବା ସମ୍ଭବ ନୁହେଁ । ବିଭକ୍ତ ଓ ବିଭଜନର ମର୍ଯ୍ୟାଦା ରକ୍ଷା ପାଇଁ ଅସୁସ୍ଥ ପ୍ରତିଯୋଗିତା ଆରମ୍ଭ ହୋଇପାରେ । ପରିଶେଷରେ ୧୯୧୧ ମସିହା ଏପ୍ରିଲ ମାସରେ ତିନୋଟି ଅନୁଷ୍ଠାନର ଆନୁଷ୍ଠାନିକ ମିଳନ ହେଲା । ଏହା ସେହିବର୍ଷ "ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ" ରୂପେ ଆନୁଷ୍ଠାନିକ ଭବେ ରେଜେଷ୍ଟ୍ରିଭୁକ୍ତ ହେଲା । ଭାଇସରୟ ଲର୍ଡ ହାଡ଼ିଞ୍ଜଙ୍କ ପରାମର୍ଶ କ୍ରମେ ଭାରତ ବ୍ୟାପାର ସେକ୍ରେଟାରୀ କାଶୀଠାରେ ଏକ ଆବାସିକ ବିଶ୍ୱବିଦ୍ୟାଳୟ ସ୍ଥାପନ କରିବାକୁ ଅନୁମତି ଦେଇଥିଲେ ।

ବିଶ୍ୱେଶ୍ୱରୟାଙ୍କ ମତରେ ଦେଶରେ ଗୁଣାତ୍ମକ ଅଧିକ ବିଶ୍ୱବିଦ୍ୟାଳୟ ସ୍ଥାପନ ହେବା ଉଚିତ । ଅଷ୍ଟ୍ରେଲିଆ ଓ କାନାଡ଼ା ପ୍ରଭୃତି ଦେଶମାନଙ୍କରେ ପ୍ରତି ୧୦ ଲକ୍ଷ ଲୋକ ସଂଖ୍ୟାରେ ଗୋଟିଏ ଗୋଟିଏ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିବା ସମୟରେ ଆମ ଦେଶରେ କାହିଁକି ହୋଇପାରିବ ନାହିଁ ? ମହୀଶୂର ଲୋକସଂଖ୍ୟା ୬୦ ଲକ୍ଷରୁ ଊର୍ଦ୍ଧ୍ୱ ହେଲେ ମଧ୍ୟ ଏହାର ସ୍କୁଲ କଲେଜ ଗୁଡ଼ିକ କାହିଁକି ମାଡ୍ରାଜ ବିଶ୍ୱବିଦ୍ୟାଳୟ ଅଧୀନରେ ରହିବ ? ଦେଶର ଦାରିଦ୍ର୍ୟ ଅବସ୍ଥା ସୁଧାରିବା ପାଇଁ ସେ ବିଭିନ୍ନ ଚିନ୍ତା କରୁଥିଲେ । ତାଙ୍କ ଭାଷାରେ "The specific aim of the Mysore University should be, to develop the intellectual ability and the executive power of our citizens and to afford the training necessary to prepare future manufacturers, marchants, besiness-men, economists, lawers, scientists, engineers, statesmen etc. for the country."

ମହିଶୂର ବିଶ୍ୱବିଦ୍ୟାଳୟର ଗଠନ ପାଇଁ ଏକ ପ୍ରତିନିଧିଦଳ ଇଂଲଣ୍ଡ, ଆମେରିକା, ଜାପାନ, କାନାଡ଼ା ଓ ଅଷ୍ଟ୍ରେଲିଆ ପରିଭ୍ରମଣ କରି ତଥ୍ୟ ସଂଗ୍ରହ କଲେ । ସେଥିରେ ପ୍ରଫେସର, ସି. ଆର. ରେଡ୍‌ଡ଼ି, ମହୀଶୂର ମହାରାଜା କଲେଜର ପ୍ରିନିସପାଲ ଥମାସ ଡ଼ନହାମ୍ ଥିଲେ । ବିଶ୍ୱବିଦ୍ୟାଳୟର ଏକ ପରିକଳ୍ପନା ପ୍ରସ୍ତୁତ କରି ତତ୍‌କାଳୀନ ଭାଇସରୟ ଲର୍ଡ ହାର୍ଡ଼ିଞ୍ଜଙ୍କୁ ଦେଲେ ।

ମାଡ୍ରାଜ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ ମହୀଶୂର ରାଜ୍ୟରେ ଏକ ବିଶ୍ୱବିଦ୍ୟାଳୟ ହେବା ଚାହୁଁ ନ ଥିଲେ । ମାଡ୍ରାଜର ଲାଟ ବା ରାଜ୍ୟପାଳ ଓ ଅନ୍ୟାନ୍ୟ ଅଫିସର ଏହାର ବିରୋଧ କରୁଥିଲେ । ମହୀଶୂର ମହାରାଜାଙ୍କ ଇଂରେଜ

ଉପଦେଷ୍ଟାମାନେ ମଧ୍ୟ ଏକ ଦେଶୀୟ ରାଜ୍ୟରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେବା ଚାହୁଁ ନଥିଲେ । ସେଣ୍ଟ୍ରାଲ କଲେଜର ପ୍ରିନ୍‌ସିପାଲ ଟାର୍ଟ ମହୀଶୂର ବିଶ୍ୱବିଦ୍ୟାଳୟ ଅଧୀନରେ ଚାକିରି ନ କରିବାକୁ ଧମକ ଦେଲେ ।

ଲର୍ଡ୍ ହାର୍ଡିଞ୍ଜ ୧୯୧୬ ମସିହା ବସନ୍ତ ପଞ୍ଚମୀ ଦିନ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଭିତ୍ତିପ୍ରସ୍ତର ସ୍ଥାପନ କଲେ । ମହୀଶୂର ଭାଗ୍ୟରେ ବିଶ୍ୱବିଦ୍ୟାଳୟଟିଏ ହୋଇ ପାରିଲା ନାହିଁ । କିନ୍ତୁ ବିଶ୍ୱେଶ୍ୱରୟା ଏଥିରେ ନିରାଶ ହେବାର ଲୋକ ନୁହନ୍ତି । ସେ ଭଲ ଭାବରେ ଉପଲବ୍ଧି କରିଥିଲେ ଯେ ଏକ ବିଦେଶୀ ଶାସନ ଅଧୀନରେ ଭାରତ ରହିଥିବା ଯୋଗୁଁ ଭାରତୀୟଙ୍କୁ କୌଣସି କ୍ଷେତ୍ରରେ ବିକାଶ ସାଧନ ସେମାନେ ଚାହାନ୍ତି ନାହିଁ । ସେ ହତାଶ ନ ହୋଇ ମହୀଶୂର ମହାରାଜା ଓ ଦିଲ୍ଲୀରେ ଇଂରେଜ ଶାସକଙ୍କୁ ରାଜ୍ୟରେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର ଆବଶ୍ୟକତା ସମ୍ପର୍କରେ ବୁଝାଇଲେ ଏବଂ ସେଥିରେ ସଫଳ ହେଲେ । ପରିଶେଷରେ ୧୯୧୬ ମସିହା ଜୁଲାଇ ୨୨ ତାରିଖରେ ମହୀଶୂର ବିଶ୍ୱବିଦ୍ୟାଳୟର ଶୁଭ ଉଦ୍‌ଘାଟନ ହୋଇଥିଲା । ଏକ କରଦ ରାଜ୍ୟରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେବା ଏହା ହେଲା ପ୍ରଥମ । ତାହା ବର୍ତ୍ତମାନ ବାଙ୍ଗାଲୋର ବିଶ୍ୱବିଦ୍ୟାଳୟ ନାମରେ ନାମିତ ହୋଇଛି ।

ଭଦ୍ରାବତୀ ଆଇରନ୍ ଓ୍ୟାକର୍ସ୍ ଯେତେବେଳେ ଜରାଜୀର୍ଣ୍ଣ ଅବସ୍ଥାରେ ଥିଲା ସେ ତାର ଚେୟାରମ୍ୟାନ ହୋଇ ତାର ସୁପରିଚାଳନା ଯୋଗୁଁ ପୁନରାୟ ଏକ ଲାଭ ଜନକ ସଂସ୍ଥାରେ ପରିଣତ ହୋଇ ପାରିଥିଲା । ସେଥିପାଇଁ ତାଙ୍କୁ ଦୁଇ ଲକ୍ଷ ଟଙ୍କା ଅବୈତନିକ ଭତ୍ତା ମିଳିଥିଲା । ସେହି ଟଙ୍କାରେ ସେ ଏକ "ଶ୍ରୀଜୟଚାମରାଜେନ୍ଦ୍ର ଅକୁପେସନାଲ ଇନଷ୍ଟିଚିଉଟ" ନାମରେ ବାଙ୍ଗାଲୋର ଠାରେ ଏକ ଅନୁଷ୍ଠାନ ପ୍ରତିଷ୍ଠା କରି ନିଜ ନାମ ପରିବର୍ତ୍ତେ ରାଜାଙ୍କ ନାମରେ ନାମିତ କରିଥିଲେ ।

—*—

ଦଶମ ପରିଚ୍ଛେଦ :

# କୃଷ୍ଣରାଜସାଗର ନିର୍ମାଣ

୧୯୧୨ ମସିହା ନଭେମ୍ବର ମାସରେ କୃଷ୍ଣରାଜସାଗର ବନ୍ଧ ଯୋଜନାର ନିର୍ମାଣ କାର୍ଯ୍ୟ ଖୁବ୍ ଯୋରସୋରରେ ଆଗେଇ ଚାଲିଥାଏ । ବିଶ୍ୱେଶ୍ୱରୟା ଚିଫ୍ ଇଞ୍ଜିନିୟରରୁ ଦେଓ୍ୱାନ ବା ପ୍ରଧାନମନ୍ତ୍ରୀ ହେଲେ । ନିର୍ମାଣ କାର୍ଯ୍ୟ ଚାଲୁଥିଲା ବେଳେ କାବେରୀ ନଦୀରେ ବନ୍ୟା ଆସିଗଲା । ଅଧିକାଂଶ ଲୋକମାନଙ୍କର ମତ ଯେ ନିର୍ମାଣ କାର୍ଯ୍ୟ ତୁରନ୍ତ ବନ୍ଦ ରଖାଯିବା ଆବଶ୍ୟକ । କିନ୍ତୁ ବିଶ୍ୱେଶ୍ୱରୟାଙ୍କର ନାସିକ ଜିଲ୍ଲାର ପଞ୍ଜାରା ନଦୀରେ ସାଇଫନ କାର୍ଯ୍ୟ କଥା ମନେ ପଡ଼ିଲା । ତାଙ୍କୁ ତୁରନ୍ତ କାର୍ଯ୍ୟ ସାରିବା ପାଇଁ କେଉଁ ପ୍ରତିକୂଳ ପରିସ୍ଥିତିରେ କାର୍ଯ୍ୟ କରିବାକୁ ପଡ଼ିଥିଲା, ତାହା ତାଙ୍କ ସ୍ମୃତିପଟରେ ଅଙ୍କିତ ହୋଇଗଲା । କୃଷ୍ଣରାଜସାଗର ବନ୍ଧରେ ୧୦୦୦୦ ଶ୍ରମିକ କାର୍ଯ୍ୟରେ ଲାଗିଥିଲେ । ତେଣୁ ସେ ଆଉ ଅଧିକ ୨୦୦୦ ଶ୍ରମିକଙ୍କୁ କାର୍ଯ୍ୟରେ ଲଗାଇଲେ । ଏହି ଅଧିକ ଶ୍ରମିକଙ୍କ ପାଇଁ ଅଧିକ ଅର୍ଥ ସୁନାଖଣି କମ୍ପାନୀ ଦେବାପାଇଁ ରାଜିହେଲେ । କାରଣ ତାଙ୍କର ୧୯୧୫ ଜୁଲାଇଠାରୁ ବିଦ୍ୟୁତ୍ ଆବଶ୍ୟକ ହେଉଥିଲା ।

ବିଶ୍ୱେଶ୍ୱରୟା ପ୍ରତିଶ୍ରୁତି ରକ୍ଷାପାଇଁ ଦିନରାତି ଶ୍ରମିକମାନଙ୍କୁ କାର୍ଯ୍ୟରେ ଲଗାଇଲେ । ସେମାନଙ୍କୁ ରାତିସାରା କାର୍ଯ୍ୟ କରିବାକୁ ସୁଯୋଗ ଦେବାପାଇଁ "ଓ୍ୟାସିଙ୍ଗଟନ ଲାଇଟ" ବ୍ୟବସ୍ଥା କଲେ । ସେଠାରେ ଭୀଷଣ ମ୍ୟାଲେରିଆ ହେଉଥିବାରୁ ମ୍ୟାଲେରିଆର ଚିକିତ୍ସା ଏବଂ ପ୍ରତିକାର ପାଇଁ ଡାକ୍ତରମାନଙ୍କୁ ନିଯୁକ୍ତ କଲେ । ସେ ପୋଲିସ ଇନସ୍‌ପେକ୍ଟର ଜେନେରାଲ, ଡେପୁଟି କମିଶନର ଏବଂ ଚିଫ୍ ଇଞ୍ଜିନିୟରଙ୍କୁ କାର୍ଯ୍ୟସ୍ଥଳୀରେ ରାତ୍ରିଯାପନ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଯେତେବେଳେ ମହୀଶୂର ରିପ୍ରେଜେନଟେଟିଭ ଆସେମ୍ବ୍ଲି ବା ପ୍ରତିନିଧି ସଭାର ଅଧିବେଶନ ଚାଲିଥିବ, ସେତେବେଳେ ବିଶ୍ୱେଶ୍ୱରୟା ସକାଳ ୧୧ ଘଟିକାଠାରୁ ସନ୍ଧ୍ୟା ୫ ଘଟିକା ପର୍ଯ୍ୟନ୍ତ ଆସେମ୍ବ୍ଲିରେ ଲାଗିଥାନ୍ତି । ପ୍ରତିନିଧି ସଭା ଶେଷ ହେବା ପରେ ଅର୍ଥାତ୍ ୫ ଘଣ୍ଟା ସମୟରେ ସଙ୍ଗେ ସଙ୍ଗେ ପ୍ରକଳ୍ପ କାର୍ଯ୍ୟସ୍ଥଳକୁ ଯାଇ କାର୍ଯ୍ୟ ବିଷୟରେ ତଦାରଖ କରି ବିଳମ୍ବରେ ଗୃହକୁ ଫେରନ୍ତି । ଅଫିସରମାନଙ୍କୁ କହିଥାନ୍ତି ଯେ କୌଣସି ସମୟରେ ଯେକୌଣସି ପ୍ରତିକୂଳ ପରିସ୍ଥିତିରେ ପଡ଼ିଲେ ସଙ୍ଗେ ସଙ୍ଗେ ଫୋନ କରି ତାଙ୍କୁ ଜଣାଇବେ । ସେଥିପାଇଁ ସେ କୃଷ୍ଣରାଜସାଗର ଅଗ୍ରଗତି ସମ୍ପର୍କରେ ପ୍ରତି ଅଧଘଣ୍ଟାରେ ଫୋନ ଦ୍ୱାରା ରିପୋର୍ଟ ପାଇପାରୁଥିଲେ ।

ପାଣିପାଗର ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେଉଥିବାରୁ କୋଲାର ସୁନାଖଣି କମ୍ପାନି ନିଜ ତରଫରୁ ଇଂରେଜ ସରକାରଙ୍କୁ ଲେଖି ଜଣାଇ ଦେଲେ ଯେ ସେ ଆଉ ଠିକ୍ ସମୟରେ କାର୍ଯ୍ୟଟି ସାରିବା ପାଇଁ ଯୋର ଦେବେ ନାହିଁ ।

ବିଶ୍ୱେଶ୍ୱରୟା ଏହି କାର୍ଯ୍ୟଟିକୁ ଏକ ମୁକାବିଲା ରୂପେ ଗ୍ରହଣ କରିଥିଲେ । ସେ ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ କାର୍ଯ୍ୟର ପ୍ରଥମ ଦଫା ଶେଷକରି ଶିବ ସମୁଦ୍ରକୁ ଅନବରତ ଜଳ ଯୋଗାଇ ଦେଲେ ଏବଂ କାର୍ଯ୍ୟଟି ଠିକ୍ ସମୟରେ ସମ୍ପୂର୍ଣ୍ଣ କରି ଜୁଲାଇ ୧୯୧୫ ମସିହାରେ କୋଲାର ଖଣି ଅଞ୍ଚଳକୁ ବିଦ୍ୟୁତ୍ ଶକ୍ତି ଯୋଗାଇ ଦେଲେ । ବିଭିନ୍ନ ବାଧା ଓ ବିଘ୍ନ ମଧ୍ୟରେ କାର୍ଯ୍ୟଟିକୁ ଠିକ୍ ସମୟରେ ସମ୍ପନ୍ନ କରିଥିବାରୁ ବିଶ୍ୱେଶ୍ୱରୟାଙ୍କର ଉଚ୍ଚ ପ୍ରଶଂସା କରି ଜନ୍ ଟେଲର ଆଣ୍ଡ କମ୍ପାନି ବ୍ରିଟିଶ ସରକାର ଓ ମହାରାଜାଙ୍କୁ ପତ୍ର ଲେଖି ଜଣାଇ ଦେଇଥିଲେ ।

କୃଷ୍ଣରାଜସାଗର ପ୍ରକଳ୍ପଟି ଭାରତର ଏକ ଅନନ୍ୟ ପ୍ରକଳ୍ପ ଯାହା ଅନ୍ୟ କୌଣସିଠାରେ ଦେଖାଯାଏ ନାହିଁ । ସେଗୁଡ଼ିକ ହେଲା—

୧—୧୯୧୨ ମସିହାରେ କୃଷ୍ଣରାଜସାଗର ନିର୍ମାଣ ସମୟରେ ଏହି ଜଳଭଣ୍ଡାରଟି ସାରାଭାରତ ମଧ୍ୟରେ ସର୍ବବୃହତ । ଏପରିକି ମାଦ୍ରାଜ (ତାମିଲ୍‌ନାଡୁ) ସରକାର ୧୯୨୫ ମସିହାରେ ମେଟୁର ଜଳଭଣ୍ଡାର ନିର୍ମାଣ କରିବା ପର୍ଯ୍ୟନ୍ତ ଏହା ଭାରତ ମଧ୍ୟରେ ତାର ଶ୍ରେଷ୍ଠତ୍ୱ ବଜାୟ ରଖିଥିଲା । ଏହି ଜଳଭଣ୍ଡାର ଦ୍ୱୟ କାବେରୀ ନଦୀ ଉପରେ ହିଁ ନିର୍ମିତ ହୋଇଛି ।

୨—ଏହି ପ୍ରକଳ୍ପର ୨ କିଲୋମିଟର ୮୦୦ ମିଟର ଦୈର୍ଘ୍ୟ ବିଶିଷ୍ଟ ବାମପାର୍ଶ୍ୱ କେନାଲଟି କଠିନ ପର୍ବତମାଳା ଭେଦକରି ଏକ ଟନେଲ ମଧ୍ୟରେ ଗତି କରିଛି । ଭାରତର ଏହି ଟନେଲ ଏକ ଅନନ୍ୟ ଏବଂ ଦୀର୍ଘତମ ଟନେଲ ।

୩—ଏହି ପ୍ରକଳ୍ପଟି ଏକ ବହୁମୁଖୀ ଯୋଜନା । ଏହି ଜଳଭଣ୍ଡାରର ଜଳ ୪୦୪୬୦ ହେକ୍ଟର ଚାଷ ଜମିକୁ ଜଳସେଚିତ କରିବା ସହିତ ଏଥିରୁ ଉତ୍ପନ୍ନ ବିଦ୍ୟୁତ୍ କୋଲାର ସୁନାଖଣିକୁ ଯୋଗାଇ ଦିଆଯାଏ । ଏହା ମହୀଶୂର ଓ ବାଙ୍ଗାଲୋର ସହରକୁ ବିଦ୍ୟୁତ୍ ଆଲୋକ ଯୋଗାଇବା ସହିତ ଅନ୍ୟାନ୍ୟ ଛୋଟ ଛୋଟ ସହର ଓ ଗ୍ରାମକୁ ମଧ୍ୟ ବିଦ୍ୟୁତ୍ ଶକ୍ତି ଯୋଗାଇଥାଏ । ଆଖୁଚାଷ ଏହି ଅଞ୍ଚଳର ଏକ ଲାଭ ଜନକ ଫସଲ, ଯାହା ଫଳରେ ଆଖୁ କଳକୁ କଞ୍ଚାମାଲ ସହ ଶକ୍ତି ମଧ୍ୟ ଏହି ପ୍ରକଳ୍ପରୁ ମିଳିପାରୁଥିଲା । ମହୀଶୂରର ଚିନିଶିଳ୍ପ ଭାରତରେ ଖ୍ୟାତି ଅର୍ଜନ କରିଛି । ବାଙ୍ଗାଲୋର ସ୍ଥିତ ସୂତାକଳ ଓ ଅନ୍ୟାନ୍ୟ ଶିଳ୍ପ ସଂସ୍ଥାକୁ ଏହି ପ୍ରକଳ୍ପରୁ ସୁଲଭ ମୂଲ୍ୟରେ ବିଦ୍ୟୁତ୍ ଶକ୍ତି ଯୋଗାଇ ଦିଆଯାଏ ।

୪—ବିଶ୍ୱେଶ୍ୱରୟା ଦେଓ୍ୱାନ୍ ଥିବା ସମୟରେ ତତ୍କାଳୀନ ମୁଖ୍ୟଯନ୍ତ୍ରୀ ଏହି ପ୍ରକଳ୍ପର ଅର୍ଥନୈତିକ ଦିଗ ବିଷୟରେ ଏକ ବିବରଣୀ ଉପସ୍ଥାପନ କରିଥିଲେ । ସେଥିରେ କୁହାଯାଇଥିଲା ଯେ ଏହି ପ୍ରକଳ୍ପ ପାଇଁ ସାଢ଼େ ୧୦ କୋଟି ଟଙ୍କା ମୂଳଧନ ଖଟାଯାଇଥିବା ସ୍ଥଳେ, ସରକାର ରାଜସ୍ୱ ବାବଦରେ ବାର୍ଷିକ ଦେଢ଼କୋଟି ଟଙ୍କା ପାଇଥାନ୍ତି । ଏହି ରାଜସ୍ୱ ମୂଳଧନର ପ୍ରାୟ ଶତକଡ଼ା ୧୫ ଭାଗ ।

ମହୀଶୂର ସରକାର କୃଷ୍ଣରାଜ ସାଗର ପ୍ରକଳ୍ପର ଦ୍ୱିତୀୟ ପର୍ଯ୍ୟାୟ କାର୍ଯ୍ୟ ଆରମ୍ଭକରିବାକୁ ଯିବାରୁ ମାନ୍ଦ୍ରାଜ ସରକାର ସେଥିପାଇଁ ଆପତ୍ତି ଉଠାଇଲେ । ଭାରତ ସରକାର ଏହି ବିଷୟରେ ଏକ ମଧ୍ୟସ୍ଥ ନ୍ୟାୟାଧିକରଣ ବା ଆରବିଟ୍ରେସନ ଟ୍ରିବୁନାଲରେ ମୋକଦମା ରୁଜୁ କଲେ । ସେଥିରେ ପ୍ରତିନିଧିତ୍ୱ କରିବା ପାଇଁ ମହୀଶୂର ସରକାରଙ୍କ ତରଫରୁ ବିଶ୍ୱେଶ୍ୱରାୟା ଏବଂ ମାନ୍ଦ୍ରାଜ ସରକାରଙ୍କ ତରଫରୁ ସି. ପି. ରାମସ୍ୱାମୀ ଆୟାର ଯାଇଥିଲେ ଏବଂ ଉଭୟ ତରଫରୁ ସେଥିପାଇଁ ଦୃଢ଼ ଯୁକ୍ତି ଉପସ୍ଥାପନ କରାଗଲା । ରାମସ୍ୱାମୀ ଆୟାରଙ୍କର ଯୁକ୍ତି ହେଲା କନ୍ନମ୍ବାଡ଼ୀ ଠାରେ ଦ୍ୱିତୀୟ ପର୍ଯ୍ୟାୟର କାର୍ଯ୍ୟ ସମ୍ପୂର୍ଣ୍ଣ ହେଲେ କାବେରୀ ନଦୀର ଜଳ ମେଟୁର ପ୍ରକଳ୍ପରେ ସମ୍ପୂର୍ଣ୍ଣ ରୂପେ ଉପଲବ୍ଧ ହେବନାହିଁ ।

ବିଶ୍ୱେଶ୍ୱରାୟା ଦୃଢ଼ଯୁକ୍ତି ବାଢ଼ି କହିଲେ ଯେ, ମହୀଶୂର ସରକାର କାବେରୀ ନଦୀରୁ ମାତ୍ର ୧,୧୫,୦୦୦ ଏକର ବା ୪୬୫୭୯ ହେକ୍ଟର ଜମିକୁ ଜଳସେଚନ କରିବା ପାଇଁ ଜଳ ବ୍ୟବହାର କରୁଥିବା ବେଳେ ମାନ୍ଦ୍ରାଜ ସରକାର ୧୨,୨୫୦୦୦ ଏକର ବା ୪,୯୫,୬୩୫ ହେକ୍ଟର ଜମିକୁ ଜଳସେଚନ କରିବା ପାଇଁ ଜଳ ବ୍ୟବହାର କରୁଛି । ସେମାନେ ୯୨ ଶତକଡ଼ା ଜଳ ବ୍ୟବହାର କରୁଥିବା ବେଳେ ଆମେ ମାତ୍ର ଶତକଡ଼ା ୮ ବ୍ୟବହାର କରୁଛୁ । ତେଣୁ ମହୀଶୂର ଆଉ କିଛି ଅଧିକ ଜଳ ବ୍ୟବହାର କରିବାକୁ ଚାହୁଁଛି । କନ୍ନମ୍ବାଡ଼ୀ ଜଳଭଣ୍ଡାରର ଜଳଧାରଣର କ୍ଷମତା ୯୫୬୬୦ ନିୟୁତ ଘନଫୁଟ ( ୮୮୮.୮୧ ନିୟୁତ ଘ.ମିଟର ) । ଏହା ୩,୨୦,୦୦୦ ଏକର ( ୧,୨୯,୪୭୨ ହେକ୍ଟର ) ଜମିକୁ ଜଳସେଚନ କରିପାରିବ । ତେଣୁ କନ୍ନମ୍ବାଡୀ ( କୃଷ୍ଣରାଜ ସାଗର) ଦ୍ୱାରା ମେଟୁର ପ୍ରକଳ୍ପର କିଛି କ୍ଷତି ହେବନାହିଁ । ସେ ପୁଣି ଥରେ ମାନ୍ଦ୍ରାଜ ସରକାରଙ୍କୁ ପ୍ରତିଶ୍ରୁତି ଦେଲେ ଯେ, ଏହି ମଧ୍ୟସ୍ଥି ନ୍ୟାୟାଧିକରଣ ( ଆରବିଟ୍ରେସନ୍ ଟ୍ରିବ୍ୟୁନାଲ ) ଯେଉଁ ରାୟଦେବ ମହୀଶୂର ସରକାର ତାହାକୁ ମାନିନେବ ।

ନ୍ୟାୟାଧିକରଣ କନ୍ନମ୍ବାଡ଼ୀ ପ୍ରକଳ୍ପର ଦ୍ୱିତୀୟ ପର୍ଯ୍ୟାୟର କାର୍ଯ୍ୟ ଆରମ୍ଭ କରିବାକୁ ଅନୁମତି ଦେଲେ । ଏହାଦ୍ୱାରା ବନ୍ଧର ଉଚ୍ଚତା ୧୩୦ ଫୁଟ ବା ୩୯.୬୨ ମିଟର ପର୍ଯ୍ୟନ୍ତ ବଢ଼ାଯାଇ ପାରିବ । ଏହି ଜଳଭଣ୍ଡାରରୁ ପର୍ଯ୍ୟାୟକ୍ରମେ ଧାର୍ଯ୍ୟ ପରିମାଣର ଜଳ ଛଡ଼ାଯିବ, ଯାହାଦ୍ୱାରା କାବେରୀ ନଦୀର ନିମ୍ନଭାଗରେ ଥିବା ଜଳର ଚାହିଦା ମେଣ୍ଟାଯାଇ ପାରିବ । ଭାରତ ସରକାର ଏହାକୁ ମାନି ନେଇଥିଲେ କିନ୍ତୁ ମାନ୍ଦ୍ରାଜ ସରକାର ଏହାକୁ ମାନିବାକୁ ବାଧ ନହେବାରୁ ମାନ୍ଦ୍ରାଜ ସରକାର ଏହି ରାୟ ବିରୁଦ୍ଧରେ ଲଣ୍ଡନସ୍ଥିତ ଭାରତ ପାଇଁ ଅଭିପ୍ରେତ ସେକ୍ରେଟାରୀ ଅଫ୍ ଷ୍ଟେଟଙ୍କ ପାଖରେ ଅପିଲ କଲେ ।

ସେକ୍ରେଟେରୀ ଅଫ୍ ଷ୍ଟେଟ୍ ତିନିଗୋଟି ବିକଳ୍ପ ପ୍ରସ୍ତାବ ଦେଲେ । ତନ୍ମଧ୍ୟରୁ ଗୋଟିଏ ହେଲା—ଦ୍ୱିତୀୟ ଥର ଅପିଲ କରିବା ବା ଆରବିଟ୍ରେସନ (ମଧ୍ୟସ୍ଥି)

ମାଧ୍ୟମରେ ସମାଧାନ କରିବା । ବିଶ୍ୱେଶ୍ୱରୟା ଆରବିଟ୍ରେସନ (ମଧ୍ୟସ୍ଥି) ମାଧ୍ୟମରେ ସମାଧାନ କରିବାକୁ ପସନ୍ଦ ଇଲେ କିନ୍ତୁ ସେ ତତ୍‌ପରେ ଗ୍ୱକିରିରୁ ଅବସର ନେଇଥିଲେ । ମହୀଶୂର ସରକାର ପରିଶେଷରେ ଆପୋଷ ମିଳାମିଶା ମାଧ୍ୟମରେ ଏହାର ସମାଧାନ କଲେ । ମାତ୍ର ସେଥିରେ ମହୀଶୂର ସରକାରଙ୍କର ବିଶେଷ ଲଭ ହେଲନାହିଁ । ଶେଷରେ ଭାରତ ସରକାର ଏହି ସମାଧାନକୁ ଗ୍ରହଣ କଲେ । କନ୍ନମ୍ବଡ଼ୀ (କୃଷ୍ଣରାଜସାଗର) ପ୍ରକଳ୍ପଟି ସମ୍ପୂର୍ଣ୍ଣ ହେବାକୁ ଦୀର୍ଘ ୨୦ ବର୍ଷ ଲଗିଥିଲ ।

କନ୍ନମ୍ବଡୀ ପ୍ରକଳ୍ପଟି ମହାରଜା ଶ୍ରୀକୃଷ୍ଣରାଜ ଓ୍ୱାଦେକରଙ୍କ ନାମାନୁସାରେ କୃଷ୍ଣରାଜସାଗର ରୂପେ ନାମିତ ହେଲ । ଏହି ପ୍ରକଳ୍ପ ଦ୍ୱାରା ୨୫ ଗୋଟି ଗ୍ରାମର ୧୦,୦୦୦ ପରିବାର ସେମାନଙ୍କର ବାସଗୃହ ଏବଂ ପ୍ରାୟ ୨୩୫୩୩ ଏକର (୯୫୨୧.୪୫ ହେକ୍ଟର) ଗ୍ୱଷଜମି ହରାଇଲେ । ସେମାନଙ୍କୁ କ୍ଷତିପୂରଣ ବାବଦରେ ୪୬ ଲକ୍ଷ ୫୦ ହଜାର ଟଙ୍କା ଦେବାକୁ ପଡ଼ିଥିଲ । ବିଶ୍ୱେଶ୍ୱରୟା ସନ୍ତୋଷର ସହିତ କହିଥିଲେ ଯେ କ୍ଷତିପୂରଣ ବାବଦରେ କେହିକିଛି ଅଭିଯୋଗ କରିନଥିଲେ, କାରଣ ସେମାନେ ଆଶାନୁରୂପ କ୍ଷତିପୂରଣ ପାଇଥିଲେ ।

ପ୍ରକଳ୍ପଟିର ଲମ୍ବ ୮୬୦୦ ଫୁଟ (୨୬୨୧.୩୦ ମିଟର) ଏବଂ ସର୍ବୋଚ୍ଚ ଉଚ୍ଚତା ୧୨୪ ଫୁଟ (୩୭.୮୦ ମିଟର) । ଏହାର ଜଳଧାରଣ କ୍ଷମତା ୪୮୩୦୦ ନିୟୁତ ଘନଫୁଟ (୧୩୬୬.୮୯ ନିୟୁତ ଘନମିଟର) । ଏହି ବନ୍ଧରେ ୧୫ ଫୁଟ (୪.୫୭) ଓସାରର ରାସ୍ତା ଉପରେ ପରିବହନ ବସ୍ ଓ ଅନ୍ୟାନ୍ୟ ଯାନବାହାନ ଯାତାୟତ କରିପାରୁଛି । ୧୬୧ଟି ସ୍ଲୁଇସ ଗେଟ ଅଛି । ସେଥି ମଧ୍ୟରୁ ୧୩୬ଟି ଗେଟ ଭଦ୍ରାବତୀ ଲୌହ ଏବଂ ଇସ୍ପାତ କାରଖାନାରେ ନିର୍ମିତ । ବାକିଗେଟ୍‌ଗୁଡ଼ିକ ବିଦେଶରୁ ଆମଦାନୀ ହୋଇଛି । ମୋଟାମୋଟି ଏହି ପ୍ରକଳ୍ପଟିରେ ୨.୫୦ କୋଟି ଟଙ୍କା ଖର୍ଚ୍ଚ ହୋଇଥିଲ ।

କୃଷ୍ଣରାଜସାଗର ବନ୍ଧ କାର୍ଯ୍ୟ ସମ୍ପୂର୍ଣ୍ଣ ହେଲେ ମଧ୍ୟ ଏହାର କେନାଲ ହୋଇ ନଥିବା ଯୋଗୁଁ ଜଳଭଣ୍ଡାରରେ ଜଳପୂର୍ଣ୍ଣ ହୋଇ ରହିଲେ ମଧ୍ୟ ଗ୍ୱଷପାଇଁ ଜଳ ନ ମିଳିବା—ଦେଶର ସମସ୍ତ ଟଙ୍କା ପାଣିରେ ପକାଇ ଦେଲପରି ହେବ । ଯଦିଓ ପୂର୍ବରୁ ନିମ୍ନସ୍ତରରେ ଦୁଇଟି କେନାଲ ୧,୦୫,୦୦୦ ଏକର (୪୨୪୮୩ ହେକ୍ଟର) ଜମିକୁ ଜଳ ଯୋଗାଇ ଦେଉଥିଲ ଅଧିକ ଜଳକୁ ଜଳସେଚନ ପାଇଁ ବିନିଯୋଗ କରିବାକୁ କେନାଲ ନିର୍ମାଣ ଏକାନ୍ତ ଆବଶ୍ୟକ ।

ଏହି ପ୍ରକଳ୍ପର ବଳକା ଜଳକୁ ଉପଯୋଗ କରିବା ପାଇଁ ଉଚ୍ଚ ସ୍ତରରେ ଏକ କେନାଲ ବା ହାଇଲେବଲ କେନାଲ ନିର୍ମାଣ କରିବା ଆବଶ୍ୟକ ମାତ୍ର ଏହା ଅତ୍ୟନ୍ତ କଷ୍ଟସାଧ୍ୟ । ମହାରଜା ଏଥିପାଇଁ ଅବସର ପ୍ରାପ୍ତ ବିଶ୍ୱେଶ୍ୱରୟାଙ୍କର ପରାମର୍ଶ ଲୋଡ଼ିଥିଲେ । ବିଶ୍ୱେଶ୍ୱରୟା ମହାରଜାଙ୍କର ପତ୍ରର ଉତ୍ତରରେ ସମ୍ମତି ଜଣାଇଲେ । ସେ ସେଥିପାଇଁ ଗଠିତ ବିଶେଷଜ୍ଞ କମିଟିରେ ଚେୟାରମ୍ୟାନ ପଦ ଗ୍ରହଣ କରିବାକୁ

ଗଢି ହେଲେ । ସେହି କମିଟି ୮୦୦ରୁ ୯୦୦ ବର୍ଗମାଇଲ ଅଞ୍ଚଳକୁ ଜଳସେଚନ କରିବା ପାଇଁ ଦୀର୍ଘ ୬୦ ମାଇଲ (୯୬ କିଲୋମିଟର) କେନାଲ ନିର୍ମାଣ କରିବା ପାଇଁ ପ୍ରସ୍ତାବ ଦେଇଥିଲେ ।

କେନାଲର ଗୋଟିଏ ଭାଗ ଏକ ସୁଡଙ୍ଗ ବା ଟନେଲ ମଧ୍ୟଦେଇ ଯାଇଛି । ଏହି କେନାଲକୁ 'ହୁଲିକେର କେନାଲ' କୁହାଯାଏ । ଏହି ଟନେଲର ଦୈର୍ଘ୍ୟ ୯୬୮୦ ଫୁଟ ବା ୨୯୫୦.୪୬ ମିଟର । ଏହି ଟନେଲଟିର ନିର୍ମାଣ ପାଇଁ ଆଫଗାନିସ୍ଥାନରୁ କୁଶଳୀ କାରିଗରମାନଙ୍କୁ ଅଣାଯାଇଥିଲା । ଆଫଗାନମାନେ ଟନେଲ ନିର୍ମାଣରେ ସିଦ୍ଧହସ୍ତ । ସେତେବେଳେ ସମଗ୍ର ଭାରତବର୍ଷରେ ଏହା ସବୁଠାରୁ ଦୀର୍ଘତମ ଟନେଲ ମଧ୍ୟରେ ଗଣ୍ୟ । ପ୍ରଥମେ ଏହି ଟନେଲଟି ଭାରତର ଭାଇସରାୟ ଲର୍ଡ ଇରଉଇନଙ୍କ ନାମରେ ନାମିତ କରାଯାଇଥିଲା ମାତ୍ର ପରେ ଏହା ବିଶ୍ୱେଶ୍ୱରାୟାଙ୍କ ନାମରେ ନାମିତ ହେଲା ।

ଏହି ପ୍ରକଳ୍ପଟିରେ ୧୨୫୦୦୦ ଏକର (୫୦୫୭୫ ହେକ୍ଟର) ଜମିରେ ସବୁଦିନିଆ ଫସଲ ହୋଇପାରିଲା । ଦିନେ ଯେଉଁ ଜମି ଶୁଷ୍କ ମରୁଭୂମି ତୁଲ୍ୟ ଥିଲା, କେନାଲ ହେବା ଦ୍ୱାରା ସେହି ଅଞ୍ଚଳ ଦିନେ ଧନଧାନ୍ୟରେ ପରିପୂର୍ଣ୍ଣ ହୋଇ ଦେଶକୁ ସ୍ୱାବଲମ୍ବୀ କରିବା ସହିତ ଅଧିକ ସମୃଦ୍ଧ କରିପାରିଛି । ପ୍ରକଳ୍ପଟି ଦ୍ୱାରା ଏହି ଅଞ୍ଚଳ ଯେ କେବଳ ଉର୍ବର ହେଲା ତାହା ନୁହେଁ, ବିଭିନ୍ନ କଳକାରଖାନା ମଧ୍ୟ ଗଢ଼ି ଉଠିଲା । ଧାନ, ଅଟାକଳ, ଚିନିକଳ, ସାରକାରଖାନା ପ୍ରଭୃତି ନିର୍ମିତ ହେଲା ଗ୍ରାମେ ଗ୍ରାମେ ବିଦ୍ୟୁତ କରଣ ହୋଇପାରିଲା । କୃଷ୍ଣରାଜସାଗର ଜଳଭଣ୍ଡାରର ଠିକ୍ ତଳେ ଥିବା ବୃନ୍ଦାବନ ଉଦ୍ୟାନର ବିଦ୍ୟୁତ ଓ ଜଳର ଲୁଚକାଳି ଖେଳ ଦର୍ଶକମାନଙ୍କର ମନକୁ ମୁଗ୍ଧ କରୁଛି । ଯେ ପର୍ଯ୍ୟନ୍ତ କୃଷ୍ଣରାଜ ସାଗରର ଜଳ ଜନହିତକର କାର୍ଯ୍ୟରେ ଲାଗିପାରୁଥିବ ସେ ପର୍ଯ୍ୟନ୍ତ ମୋକ୍ଷଗୁଣ୍ଡମ ସାର୍ ବିଶ୍ୱେଶ୍ୱରାୟାଙ୍କୁ ସମସ୍ତେ ମନେ ପକାଉଥିବେ ।

କୃଷ୍ଣସାଗର ବନ୍ଧ (କନ୍ନମ୍ବଡୀ ବନ୍ଧ) ଯୋଜନା ସମ୍ପର୍କରେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ଉଲ୍ଲେଖ କରାଯାଇପାରେ । ଯେଉଁ ସମୟରେ ଉକ୍ତ ପ୍ରକଳ୍ପ ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା, ସେତେବେଳେ ଭାରତରେ ସିମେଣ୍ଟ ଉତ୍ପାଦିତ ହେଉ ନଥିଲା । ସିମେଣ୍ଟ ବିଦେଶରୁ ଆମଦାନୀ ହେଉଥିଲା । ବିଶ୍ୱେଶ୍ୱରାୟା ଆମ ଦେଶର ପଇସା ବିଦେଶକୁ ଗ୍ଲଲିଯିବାକୁ ଦେଲେ ନାହିଁ । ତାଙ୍କର ଏହି ଦେଶଭକ୍ତି ପାଇଁ ସେ ଚିର ସ୍ମରଣୀୟ ହୋଇ ରହିବେ । ଏହି ପ୍ରକଳ୍ପରେ କିଛି ସିମେଣ୍ଟ ମଧ୍ୟ ଲାଗିନାହିଁ । ସେ ଅନ୍ୟାନ୍ୟ ଇଞ୍ଜିନିୟରଙ୍କ ସହିତ ଆଲୋଚନା କରି ଏକ ନୂତନ ପନ୍ଥା ଉଦ୍ଭାବନ କଲେ । କାଲସିୟମ ଚୂର୍ଣ୍ଣ, ପୋଡ଼ାଇଟା ଗୁଣ୍ଡ, ବାଲି ଓ ଅନ୍ୟାନ୍ୟ ଜିନିଷ ମିଶାଇ ତାହା ସିମେଣ୍ଟ ରୂପେ ବ୍ୟବହାର କଲେ । ଏପରି କରିବା ଦ୍ୱାରା ଦେଖାଗଲା ଯେ ଏହା ସିମେଣ୍ଟ ତୁଳନାରେ ଅଧିକ ଶକ୍ତିଶାଳୀ ହେଉଛି । ଏହି ମିଶ୍ରିତ ପଦାର୍ଥ ପାଣିରେ

ଗୋଳାଇ ଏକ ପେଷ୍ଟ ଆକାରର ତିଆରି କଲେ । ଏହାକୁ ସୁର୍କୀ କୁହାଯାଏ । ଏହି ସୁର୍କୀକୁ ସିମେଣ୍ଟ ରୂପେ ବ୍ୟବହାର କରି କଲ୍ଲନଡୀ ବନ୍ଧର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କଲେ । ଚିତ୍ରଦୁର୍ଗ ଜିଲ୍ଲାରେ ବାଣୀବିଳାସ ଜଳଭଣ୍ଡାରର ନିର୍ମାଣ କାର୍ଯ୍ୟରେ ମଧ୍ୟ ଏହି ସୁର୍କୀ ବ୍ୟବହାର କରି ସଫଳତା ହାସଲ କରିଥିଲେ ।

ଭାରତର କାବେରୀ ଏପରି ପବିତ୍ର ନଦୀ ଯାହାର ଜଳଧାରକୁ ତାର ଜନ୍ମସ୍ଥାନରୁ ସମୁଦ୍ର ଗର୍ଭକୁ ଲମ୍ଫ ଦେଲା ପର୍ଯ୍ୟନ୍ତ ପ୍ରତ୍ୟେକ ବିନ୍ଦୁ ଜଳ ବ୍ୟବହାର କରଯାଇ ପାରିଛି । ପୃଥିବୀର ଅନେକ ନଦୀର ଜଳ ବ୍ୟବହାର ନହୋଇ ସମୁଦ୍ରକୁ ଗ୍ଭଲି ଯାଉଛି କିନ୍ତୁ କାବେରୀ ମଧ୍ୟରେ ଅନେକ ବନ୍ଧ ନିର୍ମାଣ କରଯାଇ ତାର ଜଳ ସମ୍ପୂର୍ଣ୍ଣ ବ୍ୟବହାର କରଯାଇ ପାରିଛି । ସେଥିପାଇଁ କାବେରୀ ଏକ ଦେବୀ ରୂପେ ପୂଜା ପାଉଛନ୍ତି । କାବେରୀ ଦେବୀଙ୍କର ଏକ କମନୀୟ ମୂର୍ତ୍ତି ଡ୍ୟାମ ଉପରେ ଶୋଭା ପାଉଛନ୍ତି । ପ୍ରତ୍ୟେକ ପୂଜା ପାର୍ବଣରେ ଆମେ କହିଥାଉ—

ଗଙ୍ଗେଚ ଯମୁନେଚୈବ ଗୋଦାବରୀ ସରସ୍ୱତୀ
ନର୍ମଦେ ସିନ୍ଧୁ କାବେରୀ ଜଳେ ଅସ୍ମିନ ସନ୍ନିଧିକୁରୁ ।



ଏକାଦଶ ପରିଚ୍ଛେଦ :

# କୃଷି ପାଇଁ ଜଳସେଚନ ବ୍ୟବସ୍ଥା

ଭାରତ ଏକ କୃଷିପ୍ରଧାନ ଦେଶ । ପ୍ରତ୍ୟେକ ଚାରିଜଣଙ୍କ ମଧ୍ୟରୁ ପ୍ରାୟ ତିନିଜଣ କୃଷି କାର୍ଯ୍ୟରେ ଲାଗିଥାନ୍ତି । କୃଷକମାନେ ଦେଶର ମେରୁଦଣ୍ଡ ସଦୃଶ । ବର୍ଷାଧାରା ଓ ଚାଷହିଁ ତାର ସମ୍ବଳ । ପରାଧୀନ ଭାରତରେ କୃଷି ଅତ୍ୟନ୍ତ ଅବହେଳିତ ଅବସ୍ଥାରେ ଥିଲା । ଦେଶର ଅର୍ଥନୈତିକ ଉନ୍ନତି ପାଇଁ କୃଷିର ବିକାଶ ଏକାନ୍ତ ଆବଶ୍ୟକ । କୃଷି ପାଇଁ ଜଳ ପ୍ରୟୋଜନ । ଜଳ କେବଳ ବର୍ଷାଧାରାରୁ ଆସିଥାଏ । ବର୍ଷା ପୁଣି ଆଫ୍ରିକା ପରି ଏଠାରେ ବର୍ଷସାରା ହୁଏନାହିଁ । ବିଶ୍ୱେଶ୍ୱରୟା ଚାଷୀମାନଙ୍କୁ ସାରାବର୍ଷ କାମଧନ୍ଦା ଯୋଗାଇବା ପାଇଁ କ୍ଷୁଦ୍ର ଜଳସେଚନ, ନୂତନ ପୁଷ୍କରିଣୀ ନିର୍ମାଣ, ପୋତିହୋଇ ପଡ଼ିଥିବା ପୁଷ୍କରିଣୀର ପଙ୍କୋଦ୍ଧାର, ପୁରାତନ ବନ୍ଧବାଡ଼ର ନବୀକରଣ ଏବଂ ଅନ୍ୟାନ୍ୟ ଛୋଟବଡ଼ କେନାଲର ପରିକଳ୍ପନା କରିଥିଲେ । ସେଥିରୁ ବହୁତ ସୁଫଳ ମିଳିଲା । ବଡ଼ ବଡ଼ ନଦୀ ଉପରେ କେବଳ ବନ୍ଧ ନିର୍ମାଣ କଲେ ହେବନାହିଁ, ତାର ସଂଗୃହୀତ ଜଳର ସତ୍ ଉପଯୋଗ କରିବା ଆବଶ୍ୟକ । ବିଶ୍ୱେଶ୍ୱରୟା ସେଥିପାଇଁ କୃଷକମାନଙ୍କର ତାଲିମ ବ୍ୟବସ୍ଥା କରିଥିଲେ । ତାଲିମପ୍ରାପ୍ତ ଯୁବକୃଷକ ଆଧୁନିକ ପ୍ରଣାଳୀରେ ଉନ୍ନତ ଚାଷକରି ଆତ୍ମନିର୍ଭରଶୀଳ ହୋଇପାରିଲେ ।

ବିଶ୍ୱେଶ୍ୱରୟାଙ୍କ ମତ ହେଲା ଯେଉଁ ଦେଶରେ ଯେତେ ଅଧିକ ଲୋକ କେବଳ କୃଷି ଉପରେ ନିର୍ଭର କରନ୍ତି ସେ ଦେଶ ସେତେ ଗରିବ । ସେ ଗ୍ରାମ୍ୟ ଜୀବନର କେତେକ ବିଷୟ ଅନୁଧ୍ୟାନ କରି ବହୁତ ବ୍ୟସ୍ତ ହେଉଥିଲେ । ସେ ଦେଖିଲେ ପଲ୍ଲୀ ଅଞ୍ଚଳରେ ଲୋକମାନେ ଇନ୍ଦ୍ର ଓ ବରୁଣଙ୍କୁ ପୂଜାକରି ବର୍ଷାର ଆଗମନକୁ ସ୍ୱାଗତ କରିଥାନ୍ତି । ବର୍ଷା ହେଲେ ମଧ୍ୟ ଯେଉଁ ଜମିରେ ବର୍ଷା ହେଲେ ଫସଲ ହେବ, ସେହିପରି ଜମି ପୁରୁଷାନୁକ୍ରମେ ଭାଗ ଭାଗ ହୋଇ ଖଣ୍ଡ ଖଣ୍ଡ ହୋଇ ରହିଛି । ଚାଷର ପ୍ରଣାଳୀ କେଉଁ ପୁରୁଣା କାଳର, ତେଣୁ ଉତ୍ପାଦନର ବୃଦ୍ଧି ନାହିଁ । ଠିକ୍ ସମୟରେ କେଉଁ ଫସଲ ଆରମ୍ଭ କରାଯିବ, କେଉଁ ସମୟରେ ମଞ୍ଜି ଲଗାଯିବ, କେଉଁ ସମୟରେ କୋଡ଼ାଖୋସା କରାଯିବ କେଉଁ ସମୟରେ ଖତସାର ଦିଆଯିବ, କେଉଁ ସମୟରେ ଫସଲ ଅମଳ କରାଯିବ ତାର ସଠିକ୍ ଜ୍ଞାନ ରହୁନାହିଁ । ବହୁତ କ୍ଷେତ୍ରରେ ସ୍ତ୍ରୀଲୋକମାନଙ୍କର ସାହାଯ୍ୟ ନିଆଯାଉନାହିଁ । ଚାଷର ପରିଚାଳନାଗତ ତ୍ରୁଟି ରହିଯାଉଛି, ଏହାର ଏକ ମୁଖ୍ୟ କାରଣ ହେଲା ଅର୍ଥ । ଗରିବ ଚାଷୀ ଯଦି ଠିକ୍ ସମୟରେ କୌଣସି ଅର୍ଥ ସାହାଯ୍ୟ ନ ପାଏ, ସିଏ ଚାଷକରି ଭଲ ଫସଲ ଅମଳ କରିବ କିପରି ?

ଲୋକମାନଙ୍କ ଘରେ ବତୀ ଜଳୁନାହିଁ । ତାଙ୍କ ହାତରେ ଫଟା କଉଡ଼ି ନାହିଁ ତେଲଟୋପେ କିଣିବାକୁ । ଅଧିକାଂଶ ଲୋକେ ସନ୍ଧ୍ୟା ହେଲେ ଶୀଘ୍ର ଖାଇ ଶୋଇପଡ଼ା'ନ୍ତି । କାରଣ ପଇସାଟିଏ ବଞ୍ଚିଯିବ । ସେମାନେ ସମୟକୁ ମାପି ପାରନ୍ତି ନାହିଁ । ସେମାନେ ସୂର୍ଯ୍ୟଙ୍କ ଉଦୟ ଓ ଅସ୍ତ ଅନୁସାରେ ସମୟ ମାପିଥା'ନ୍ତି । ଶୃଙ୍ଖଳା ନଥାଏ । ଅଧିକ ସମୟ ଖଟି ଶିଖିନାହାନ୍ତି । ସମୟର ମୂଲ୍ୟ କିଛି ବୁଝନ୍ତି ନାହିଁ । ଆଳସ୍ୟରେ ଅଧିକାଂଶ ଲୋକ ପଶାପାଲିକୁ ଆଶ୍ରୟ କରି ସମୟ କଟାନ୍ତି । ପ୍ରକୃତ କୃଷିକାର୍ଯ୍ୟ ପାଇଁ ଅର୍ଥ ଯୋଗାଡ଼ କରିପାରନ୍ତି ନାହିଁ । ଋଣଭାରରେ ବୁଡ଼ି ରହିଥାନ୍ତି । ଋଣ ନ ମିଳିଲେ ସ୍ୱର୍ଣ୍ଣ କଙ୍କଣ ବା ନିଜ ଚାଷଜମି ପ୍ରଭୃତି ବନ୍ଧକ ଦେଇଥାନ୍ତି । ସେମାନେ ଅଧିକ ହାରରେ ଋଣ ନେବାପାଇଁ ମହାଜନମାନଙ୍କ ଦ୍ୱାରସ୍ଥ ହୁଅନ୍ତି । ଋଣ ସୁଝି ନପାରି ଶେଷରେ ନିଜ ଜମି ବା ଗହଣା ଇତ୍ୟାଦି ହରାଇଥାନ୍ତି । ଯେଉଁମାନଙ୍କ ଚାଷଜମି କିଛି ଥାଏ ସେଥିରୁ ପାଞ୍ଚପ୍ରାଣୀ ବଞ୍ଚୁଥିଲେ । କିନ୍ତୁ ପୁରୁଷାନୁକ୍ରମିକ ଭାବେ ଚାଷଜମି ଭାଗ ଭାଗ ହୋଇ ସେହି ଜମି ଉପରେ ୧୫ ପ୍ରାଣୀ ନିର୍ଭର କରନ୍ତି । ଲୋକେ ଯେତିକି ସମ୍ପୂର୍ଣ୍ଣ ଭାବେ ଚାଷ ଉପରେ ନିର୍ଭର କରନ୍ତି ସେ ଦେଶ ସେତିକି ଗରିବ ହୋଇଯାଏ । କୃଷି ଓ ଶିଳ୍ପର ବୃଦ୍ଧି ସମାନ ଭାବେ ହେବା ଉଚିତ୍ ।

ଗ୍ରାମଗୁଡ଼ିକର ଉନ୍ନତି ହେଲେ ଆପଣା ଛୁଏଁ ଗ୍ରାମର ଅର୍ଥନୈତିକ ଅବସ୍ଥାରେ ପରିବର୍ତ୍ତନ ହେବ । ଲୋକମାନେ ଅଧିକରୁ ଅଧିକ ଆତ୍ମନିର୍ଭରଶୀଳ ହେବେ । ପରସ୍ପର ମଧ୍ୟରେ ସହଯୋଗ ଓ ବିଶ୍ୱାସ ଜନ୍ମିବ । ଆମର ପ୍ରଧାନ କର୍ତ୍ତବ୍ୟ ହେବ ମରୁଡ଼ିର ପ୍ରତିକାର । ପ୍ରତ୍ୟେକ ପରିବାର ଯେପରି ଦୁଇବର୍ଷ ପାଇଁ ଖାଦ୍ୟଶସ୍ୟ ମହଜୁଦ୍ କରି ରଖିପାରିବେ ଏହା ତାଙ୍କର କାମନା । ଏହା ସମ୍ଭବ ହେବ କିପରି ? ଚାଷୀର ଭାଗ ଭାଗ ହୋଇଥିବା ଜମିରେ ଯେତେବେଳେ ଗୋଟିଏ ପରିବାର ଏକବର୍ଷ ଚଳିପାରୁନାହିଁ, ମରୁଡ଼ି ସମୟ ପାଇଁ ଅଧିକ ଶସ୍ୟ ସଂଗ୍ରହ କରିବ ବା କିପରି ? ଚାଷୀମାନେ କମ୍ ଖର୍ଚ୍ଚ କରି ଅଧିକ ଉତ୍ପାଦନର କୌଶଳ ଶିଖିବା ଉଚିତ । ସେଥିପାଇଁ କଠିନ ପରିଶ୍ରମ ନିତାନ୍ତ ଆବଶ୍ୟକ । ଏହି ସମସ୍ତ ସମସ୍ୟା ଅତିକ୍ରମ କରିବାକୁ ହେଲେ ସଚ୍ଚୋଟ ରହି ଅଧିକ ପରିଶ୍ରମ କରିବାକୁ ପଡ଼ିବ । ଅଧିକ ସମୟ କାର୍ଯ୍ୟ କରିବାର କୌଶଳ ଶିଖିବା ଉଚିତ । ସେମାନଙ୍କର ନିଜର ଶିଖିବାର ସ୍ପୃହା ଥିବା ଦରକାର । ବ୍ୟବସାୟ ବାଣିଜ୍ୟ ଉପରେ ସେମାନଙ୍କର ଜ୍ଞାନଥିବା ଆବଶ୍ୟକ । ତା'ହେଲେ ମରୁଡ଼ି ବା ଦୁର୍ଭିକ୍ଷ ସଙ୍ଗେ ଲଢ଼ିହେବ ।

ଗ୍ରାମଗୁଡ଼ିକର ଅବସ୍ଥିତି ସମ୍ପର୍କରେ ବିଶ୍ୱେଶ୍ୱରୟା ଦୁଃଖ ପ୍ରକାଶ କରି କହିଥିଲେ ଯେ କେଉଁ ଆବହମାନ କାଳରୁ ଗ୍ରାମଗୁଡ଼ିକ ଏକ ସରଳରେଖାରେ ନରହି ଆଗପଛ ହୋଇ ରହିଛି । ଗାଁଦାଣ୍ଡ ବହୁତ ସରୁ ଗଳିରାସ୍ତା ଉଚ୍ଚ ଖାଲ ହୋଇ ରହିଛି । ନାଳ, ନର୍ଦ୍ଦମା, ବର୍ଷାପାଣିର ସ୍ରୋତ ଗାଁ ଦାଣ୍ଡରେ ଚାଲିଛି । ନର୍ଦ୍ଦମା ପାଣି ଯିବାକୁ ସ୍ୱତନ୍ତ୍ର ବ୍ୟବସ୍ଥା ନାହିଁ । ନିଜ ଘର ଆଗରେ ଅଳିଆ ଆବର୍ଜନା ଗଦାହୋଇ ରହିଥିବ ।

ପିଇବା ପାଣିର ସୁବିଧା ନାହିଁ । ଗାଁ ମୁଣ୍ଡରେ ଥିବା ପୁଷ୍କରିଣୀ, ବଡ଼ ଛୋଟ ମୁଣ୍ଡା, କଟା, ବନ୍ଧରୁ ପିଇବା ପାଣି, ଲୁଗାପଟା ସଫା, ମଇଁଷି ଗାଈ-ଗୋରୁ ଗାଧୋଇବା, ଜନସାଧାରଣଙ୍କର ସ୍ନାନ ପାନ ଆଦି ସମସ୍ତ କାର୍ଯ୍ୟ ସମାହିତ ହୁଏ । ସ୍ଥାନେ ସ୍ଥାନେ ଗାଁର ସମସ୍ତ ବର୍ଷାଜଳ, ନର୍ଦ୍ଦମା ଜଳ ମଧ ତା ମଧ୍ୟରେ ପ୍ରବେଶ କରେ । ଗାଁ ଲୋକମାନଙ୍କର ସାଧାରଣ ନାଗରିକ ବୋଧତ୍ୱ ନାହିଁ । ଯେଉଁ ବନ୍ଧ କଟା ଓ ପୁଷ୍କରିଣୀରୁ ସେମାନେ ଉପକୃତ ହୁଅନ୍ତି ତା'ର ଆଡ଼ି ଉପରେ ବସି ମଳତ୍ୟାଗ କରନ୍ତି । ଜନସ୍ୱାସ୍ଥ୍ୟ କିମ୍ବା ଆରୋଗ୍ୟ ବ୍ୟବସ୍ଥାର ସାଧାରଣ ଜ୍ଞାନ ନାହିଁ । ବିଲକୁ କୃଷକାମକୁ ଯିବା ବ୍ୟତୀତ ଅନ୍ୟ ସମୟ ସବୁ କେବଳ ଗପକରିବା, ତାସ ଓ ପାଲିରେ କଟାଇଥାନ୍ତି ।

ଗାନ୍ଧିଜୀ ଯେପରି ଗ୍ରାମ୍ୟ ସ୍ୱରାଜ୍ୟ କଥା କହୁଥିଲେ, ବିଶ୍ୱେଶ୍ୱରୟା ଗାନ୍ଧିଜୀଙ୍କ ପୂର୍ବରୁ 'ଆତ୍ମସମ୍ମାନ ଗ୍ରାମ'ର ପରିକଳ୍ପନା କରିଥିଲେ । ସେ କୌଣସି 'ଆଦର୍ଶ' ଗ୍ରାମକଥା କହୁନଥିଲେ, ସେ କହୁଥିଲେ 'ଆତ୍ମସମ୍ମାନ ଗ୍ରାମ' ଯେଉଁ ଗ୍ରାମର ପ୍ରତ୍ୟେକ ଅଧିବାସୀ ଗର୍ବ କରି କହିବ ଯେ ସେ ନିଜ ଗ୍ରାମରେ ରହି ସମ୍ମାନ ସହ ଆତ୍ମସନ୍ତୋଷ ଲଭକରୁଛନ୍ତି ଏବଂ ଅନ୍ୟ କୌଣସି ଗ୍ରାମ ଉପରେ ନିର୍ଭର କରୁନାହାନ୍ତି । ସେତେବେଳେ ସେ ଚିନ୍ତାକରିଥିଲେ ଅତି କମ୍‌ରେ ପ୍ରତ୍ୟେକ ଗ୍ରାମର ଶତକଡ଼ା ୧୦ ଜଣ ଅନ୍ତତଃ ସ୍କୁଲକୁ ଯାଉଥିବେ । ପିଲମାନଙ୍କୁ ଯଦି ପ୍ରାଥମିକ ସ୍ତରରେ ବାଲ୍ୟକାଳରୁ ଶିକ୍ଷା ଦିଆ-ନ-ଯାଏ ସେମାନେ ନିରକ୍ଷର ନାଗରିକ ହୋଇ ଗଢ଼ି ହୋଇଯିବେ । ଯେଉଁମାନେ ନିରକ୍ଷର ହୋଇ ବଡ଼ ହେଲେଣି ସେମାନଙ୍କ ପାଇଁ ପ୍ରୌଢ ଶିକ୍ଷା ଦିଆଯିବା ଉଚିତ । ପ୍ରତ୍ୟେକ ଲୋକ ସାକ୍ଷର ନ ହେଲେ ଗ୍ରାମର ଉନ୍ନତି ହେଲେ ମଧ କୌଣସି ସୁଫଳ ମିଳିବ ନାହିଁ ।

ପ୍ରତ୍ୟେକ ଗ୍ରାମ ଗୋଟିଏ ଗୋଟିଏ ଆତ୍ମନିର୍ଭରଶୀଳ ଏକକ ଭାବେ କାର୍ଯ୍ୟ କରିବ । ସେହି ଗ୍ରାମରେ ଅତି କମ୍‌ରେ ଗୋଟିଏ ପରିବାର ବଢେଇ, ଗୋଟିଏ ପରିବାର କମାର/ଲୁହୁରା, ମୋଚି, କୁମ୍ଭାର, ବାରିକ ପ୍ରଭୃତି ରହିବେ । ଅନ୍ତତଃ ପକ୍ଷେ ସେଠାରେ ବଳଦଗାଡ଼ି ପାଇଁ ଚକ, ଲଙ୍ଗଳ ଓ ଜୋତା ପ୍ରଭୃତି ତିଆରି ହୋଇ ପାରୁଥିବ । ଗୋଟିଏ ଗୋଟିଏ ସହାୟକ କ୍ଷୁଦ୍ର ଶିଳ୍ପ ୨୫୦ ଲୋକଙ୍କ ପାଇଁ ରହିବ । ପ୍ରତ୍ୟେକ ପରିବାରରେ ଦୁଇବର୍ଷ ପାଇଁ ଖାଦ୍ୟଶସ୍ୟ ମହଜୁଦ ହୋଇ ରହିବ । ସେଥିପାଇଁ ଗୋଦାମ ଘର ଆବଶ୍ୟକ । ଉତ୍ପାଦନ ବୃଦ୍ଧି ପାଇଁ ଋଣ କରିପାରନ୍ତି, ଅନ୍ୟଥା ଋଣ କରିବା ଉଚିତ ନୁହେଁ । ମୁଣ୍ଡ ପିଛା ସର୍ବଭାରତୀୟ ଆୟର ହାର ଠାରୁ କେହି କମ୍ ଆୟର ବ୍ୟକ୍ତି ଯେପରି ସେ ଗ୍ରାମରେ ରହିବେ ନାହିଁ, ତାହା ଅର୍ଥନୈତିକ ନିରାପତ୍ତା ଭାବେ ବିବେଚନା କରାଯିବ । ପ୍ରତି ଗାଁ ମୁଣ୍ଡରେ ଗୋଟିଏ ସାଇନବୋର୍ଡ ରହିବ । ସେଥିରେ ଗ୍ରାମର ନାମ, ଲୋକ ସଂଖ୍ୟା, ଗାଈଗୋରୁଙ୍କ ସଂଖ୍ୟା, କ୍ଷୁଦ୍ରଶିଳ୍ପ ସଂଖ୍ୟା ଏବଂ ଅନ୍ୟାନ୍ୟ ଆବଶ୍ୟକୀୟ ସୂଚନା ଲେଖାହେବ । ପ୍ରୋଗ୍ରେସ୍ ରିପୋର୍ଟ

ପ୍ରତିବର୍ଷ ଛପାଯିବ । ପ୍ରତିଗ୍ରାମକୁ ଦୁଇଟି ସମ୍ବାଦ ପତ୍ର ଆସିବା ପାଇଁ ବନ୍ଦୋବସ୍ତ କରଯିବ । ଏହା ହେଉଛି ବିଶ୍ୱେଶ୍ୱରୟାଙ୍କ ନିଜର ମତ । ସେ ଏପରି ବାରମ୍ବାର କହୁଥିଲେ । ସେଥିରେ ଅନୁପ୍ରାଣିତ ହୋଇ ଗ୍ରାମଗୁଡ଼ିକ ଦିନକୁ ଦିନ ଆତ୍ମସମ୍ମାନ ଲଭ କଲେ ।

୧୯୧୨ ମସିହାରେ ବିଶ୍ୱେଶ୍ୱରୟା ଦେଓ୍ୱାନ ହେବା ପରେ ପରେ ତାଙ୍କ ଆତ୍ମ ସମ୍ମାନ ଗ୍ରାମ କଥା ଚିନ୍ତାକଲେ । ସେ ଗ୍ରାମରେ ଗ୍ରାମ କମିଟି, କୃଷି କମିଟି ଗଢ଼ିଲେ । ତାଙ୍କର ଏହି କମିଟିଗୁଡ଼ିକୁ ଛଅ ଭାଗରେ ବିଭକ୍ତ କଲେ । ଯଥା— ୧-କୃଷି କମିଟି, ୨-ଅଣକୃଷି ବୃତ୍ତି କମିଟି, ୩-ଶିକ୍ଷା କମିଟି, ୪-ଶିଳ୍ପ କମିଟି, ୫-ନିର୍ମାଣ ଓ ବାଣିଜ୍ୟ, ୬-ଗ୍ରାମ୍ୟ ଶାସନ ଓ ସାମାଜିକ କାର୍ଯ୍ୟ ସହିତ ଗ୍ରାମ୍ୟ ବିବାଦ ସମାଧାନ କମିଟି, ଏହି କମିଟି ଗୁଡ଼ିକ ଗ୍ରାମ ପଞ୍ଚାୟତ ଅଧୀନରେ ରହିଲ । ପ୍ରତ୍ୟେକ ବିଷୟରେ ଗ୍ରାମପଞ୍ଚାୟତଗୁଡ଼ିକ ସରକାରଙ୍କ ଉପରେ ନିର୍ଭର ନକରି ନିଜ ନିଜ ପଞ୍ଚାୟତର ଉନ୍ନତି ପାଇଁ କାର୍ଯ୍ୟ କଲେ ।

ଦୁଇ ବର୍ଷ ମଧ୍ୟରେ ରାଜ୍ୟର ପ୍ରାୟ ୭୪ ପ୍ରତିଶତ ଗ୍ରାମ ଅର୍ଥାତ୍ ୧୩୩୬୦ଟି ଗ୍ରାମରେ ୭୭୪୫ଟି ଗ୍ରାମ୍ୟ କମିଟି ଗଠିତ ହେଲ । ତିନିବର୍ଷ ଶେଷ ବେଳକୁ ୮୧୭୧ ଗୋଟି ଗ୍ରାମ୍ୟ କମିଟି ଗଠିତ ହୋଇଗଲ । ଗ୍ରାମ୍ୟ କମିଟିରେ ଯେ କୌଣସି କାର୍ଯ୍ୟ ପାଇଁ ଅର୍ଥ ଚାନ୍ଦା ଆକାରରେ ଆଦାୟ କରାଗଲ, କିନ୍ତୁ ଗରିବ କୃଷକ ଅର୍ଥ ଦେଇ ନ ପାରି ଶ୍ରମ ଦେଲେ । ବନ୍ଧ, କ୍ଷୁଦ୍ର ଜଳଭଣ୍ଡାର, କେନାଲ, କୂପ ଆଦି ମରାମତି ଏବଂ ଗ୍ରାମ୍ୟ ରାସ୍ତା ଗୁଡ଼ିକର ରକ୍ଷଣାବେକ୍ଷଣ ପାଇଁ ଅର୍ଥ ବଦଳରେ ଶ୍ରମଦାନ ବା କରସେବା ଏକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟଭାବେ ଗଣ୍ୟହେଲ । କେତେକ ପରିବାର ଅର୍ଥ ପରିବର୍ତ୍ତେ ସପ୍ତାହରେ ଅଧବେଳାର ଶ୍ରମଦାନ କଲେ । ୧୯୧୪ ମସିହାରେ ଏହିପରି ଶ୍ରମଦାନ ୬୧୨୬ଟି ଗ୍ରାମକୁ ବ୍ୟାପିଥିଲ ।

ବିଶ୍ୱେଶ୍ୱରୟା ଗ୍ରାମ୍ୟକମିଟି ଓ ଗ୍ରାମପଞ୍ଚାୟତ ଗୁଡ଼ିକୁ ସ୍ୱୟଂକ୍ରିୟ କରିବା ପାଇଁ ଏକ ସ୍ୱତନ୍ତ୍ର କୃଷିବିଭାଗ ସୃଷ୍ଟି କଲେ । ଏହି ବିଭାଗର ନିର୍ଦ୍ଦେଶକ ରୂପେ ମାନ୍ଦ୍ରାଜର ଅବସରପ୍ରାପ୍ତ କୃଷି ନିର୍ଦ୍ଦେଶକଙ୍କୁ ଆଣି ଅବସ୍ଥାପିତ କଲେ । ସେ ପ୍ରଥମେ ରସାୟନିକ ସାର ପ୍ରୟୋଗ କରି କୃଷିରେ ବିପ୍ଳବ ଆଣିଥିଲେ । ହେବାଲ ଠାରେ ପରୀକ୍ଷା ମୂଳକ ଭାବେ ଏକ କୃଷିଫାର୍ମ ପ୍ରତିଷ୍ଠା କଲେ । ସେଠାରେ ରୋଗ ପ୍ରତିଷେଧକ ମଞ୍ଜି ଉତ୍ପାଦନ କରି ଚାଷୀମାନଙ୍କୁ ଯୋଗାଇ ଦେଲେ । ସେ କେତେକ ଉନ୍ନତ ଧରଣର କୃଷି ଯନ୍ତ୍ରପାତି ଉତ୍ପାଦନ କରି କୃଷିରେ ବିପ୍ଳବ ଆଣିଲେ । ସେ ବେଲେହୋନ୍ନୁର ଠାରେ ଏକ କଫି ଗବେଷଣା କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ଉଦ୍ୟାନ ବିଭାଗରେ ମଧ୍ୟ ସେ ବହୁ ଉନ୍ନତି କରିଛନ୍ତି । ଆମ୍ବ, ସେଓ ପ୍ରଭୃତି ଫଳ ବଗିଚା ନଡ଼ିଆ ଗଛ ଓ କଫିଗଛ ପ୍ରଭୃତି ସେ ପଡ଼ିଆ ଜମିରେ ଲଗାଇ କୃଷି ବିପ୍ଳବ

ସୃଷ୍ଟି କରିଥିଲେ । କୃଷି ବିଭାଗରେ ନୂତନ ବୈଜ୍ଞାନିକ ପଦ୍ଧତିର ଉପଯୋଗ କରିବାରେ କୃଷକମାନେ ଡଃ ଲେସଲି କୋଲମ୍ୟାନଙ୍କୁ ମନେ ରଖିବା ସହିତ ବିଶ୍ୱେଶ୍ୱରୟାଙ୍କୁ ଏକ କୃଷି ଆତ୍ମନିର୍ଭରଶୀଳ ଦେଶ ରୂପେ ମହୀଶୂର ରାଜ୍ୟକୁ ଅଗ୍ରଣୀ କରିଥିବାରୁ ସ୍ମରଣ କରିଥାନ୍ତି ।

ବିଶ୍ୱେଶ୍ୱରୟା ବାରମ୍ବାର କହୁଥିଲେ ଯେ କୌଣସି ଦେଶ କେବଳ କୃଷିରେ ଯେତେ ଉନ୍ନତି କଲେ ମଧ୍ୟ ସେ ଦେଶର ସାମୂହିକ ଉନ୍ନତି ହୋଇ ପାରିବ ନାହିଁ, ଯେ ପର୍ଯ୍ୟନ୍ତ ସେ ଆନୁସଙ୍ଗିକ ଶିଳ୍ପ ଓ ଅନ୍ୟାନ୍ୟ ନିର୍ମାଣ କାର୍ଯ୍ୟରେ ଉନ୍ନତି ନ କରିଛି । ତେଣୁ ସେ ସବୁ ସମୟରେ ଅନ୍ୟାନ୍ୟ ଆନୁସଙ୍ଗିକ ଓ ସହାୟକ ବୃତ୍ତିରେ ଯୋର ଦେଉଥିଲେ । ରେଶମ ଚାଷ ଏକ ଅର୍ଥକାରୀ ଚାଷ । ବିଶ୍ୱେଶ୍ୱରୟା ରେଶମ ଚାଷ ପାଇଁ ଇଟାଲୀ ଦେଶର ଜଣେ ରେଶମ ଚାଷ ବିଶେଷଜ୍ଞ ସିଙ୍ଗର ଓ୍ୟାସିଙ୍ଗଟନ ମାର୍କଙ୍କୁ ନିଯୁକ୍ତି କରିଥିଲେ । ଶୁଦ୍ଧ ଓ ରୋଗଜୀବାଣୁମୁକ୍ତ କକୁନ ବା ଖୋସା ପାଇବା ପାଇଁ ଚନ୍ନପାଟଣାଠାରେ ଏକ କେନ୍ଦ୍ରୀୟ ରେଶମ ଚାଷ ଫାର୍ମ ପ୍ରତିଷ୍ଠା କରିଥିଲେ । ସେଠାରେ ବିଶେଷ ଭାବେ ତୁତ ଚାଷ ( Mulberry ) କରି ଉତ୍ତମ ଗୁଣ ବିଶିଷ୍ଟ ରେଶମ ଖୋସା ଉତ୍ପାଦନ ହେଉଥିଲା ।

ବିଶ୍ୱେଶ୍ୱରୟା ବାଙ୍ଗାଲୋରର ଜଳବାୟୁ ଫଳ ଓ ପନିପରିବା ଚାଷ ପାଇଁ ଅନୁକୂଳ ଜାଣି ଜର୍ମାନ ଦେଶରୁ ଜଣେ ଉଦ୍ୟାନବିତ୍‌ଙ୍କୁ ଅଣାଇଲେ । ଫଳ ପନିପରିବା ଚାଷର ବିଶେଷଜ୍ଞ ଜର୍ମାନ ଉଦ୍ୟାନ୍‌ବିତ୍ କ୍ରମିଗାଲଙ୍କ ଦାୟିତ୍ୱରେ ଅନେକ ଉଦ୍ୟାନ ସୃଷ୍ଟି ହେଲା । ଟିପୁସୁଲତାନଙ୍କ ଅମଳରୁ ଲାଲବାଗ ବଗିଚା ଅବହେଳିତ ଅବସ୍ଥାରେ ପଡ଼ିଥିଲା । ବାଙ୍ଗାଲୋରର ବିଖ୍ୟାତ ଲାଲବାଗ ଉଦ୍ଭିଦ ଉଦ୍ୟାନ ଓ ମହୀଶୂରର ସୁନ୍ଦର ବଗିଚାମାନ ତାଙ୍କ ଦ୍ୱାରା ପରିକଳ୍ପିତ ହୋଇଥିଲା । ସେ କେତେକ ଉତ୍ତମ ମାନର ଫୁଲ ଓ ଫଳ ମହୀଶୂର ରାଜ୍ୟରେ ପ୍ରବର୍ତ୍ତନ କରିଥିଲେ । ତନ୍ମଧ୍ୟରୁ ବନ୍ଧାକୋବି, ଅଙ୍ଗୁର, ଚମ୍ପା, ଗୋଲାପ ଓ ଜାସମିନ୍ ବା ମଲ୍ଲୀ ମାଳତୀ ଜାତୀୟ ଫୁଲ ଉଲ୍ଲେଖଯୋଗ୍ୟ ।

ବିଶ୍ୱେଶ୍ୱରୟା କେବଳ କୃଷି ଉପରେ ନୁହେଁ, ପଶୁପାଳନ ଉପରେ ମଧ୍ୟ ଅଧିକ ପ୍ରାଧାନ୍ୟ ଦେଉଥିଲେ । ସେ ଜଣେ ପଶୁଧନ ବିଶେଷଜ୍ଞ ଡାଭିସନଙ୍କୁ ରାଜ୍ୟର ଗବ୍ୟ ଚାଷ ବା ଡ଼ାଇରିଫାରମିଂ, ପଶୁ ଓ ମେଷ ପାଳନ ବିଭାଗର ଦାୟିତ୍ୱ ଦେଇଥିଲେ । ବାଙ୍ଗାଲୋର ସନ୍ନିକଟ ଦୁଇଟି ଗ୍ରାମରେ ଏହା ପ୍ରଥମେ ଆରମ୍ଭ କରିଥିଲେ । ସେ ଅଷ୍ଟ୍ରେଲିଆରୁ ଡୁମ୍ବୁର ଓ ମେରିନୋ ଜାତୀୟ ମେଷ ଆଣି ଉତ୍ତମ

ଛାଗୟ ମେଷ ପାଳନର ଶୁଭାରମ୍ଭ କରିଥିଲେ । ସେ ମହୀଶୂର ନିକଟସ୍ଥ ଗୟାନାଙ୍କରଠାରେ ଏକ ପଶୁପାଳନ କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ବିଶ୍ୱେଶ୍ୱରୟା ପ୍ରତ୍ୟେକ କୃଷକ ପରିବାର ଯେପରି କୃଷି ସହିତ ପଶୁପାଳନ ଓ କୁକୁଡ଼ା ପାଳନ କରିପାରିବେ ତା ଉପରେ ପ୍ରାଧାନ୍ୟ ଦେଉଥିଲେ ।

ବିଶ୍ୱେଶ୍ୱରୟା ଗ୍ରାମ୍ୟ ବନୀକରଣ ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ । ତାଙ୍କର ମତ ହେଲ କାଠକୁ ଇନ୍ଧନ ରୂପେ ବ୍ୟବହାର କରିବା ଉଚିତ ନୁହେଁ । ଗଛ କଟା ବନ୍ଦ ହେବା ଉଚିତ । ଗୋଟିଏ ଗଛ କଟାହେଲେ ଦୁଇଟି ବୃକ୍ଷ ରୋପଣ କରିବା ଆବଶ୍ୟକ । ଜଙ୍ଗଲ ସମ୍ପଦ ଅଯଥା ନଷ୍ଟ ହେବାକୁ ଦିଆଯିବା ଉଚିତ ନୁହେଁ । ପ୍ରତିଗ୍ରାମବାସୀ ତାଙ୍କ ଅଞ୍ଚଳରେ ଗ୍ରାମ୍ୟ ଜଙ୍ଗଲ ସୃଷ୍ଟି କରିବା ଦରକାର । ତାହାହେଲେ ପ୍ରତି ଗ୍ରାମ ଆତ୍ମସମ୍ମାନ ସହ ଆତ୍ମ ସନ୍ତୋଷ ଲାଭ କରିବେ ।

—*—

ଦ୍ୱାଦଶ ପରିଚ୍ଛେଦ :

# ଶିଳ୍ପ ସମୃଦ୍ଧି ଯୋଜନା

ସାର୍ ମୋକ୍ଷଗୁଣ୍ଡମ ବିଶ୍ୱେଶ୍ୱରୟା ବାରମ୍ବାର କହୁଥିଲେ ଯେ, କୌଣସି ଦେଶ କେବଳ କୃଷିରେ ଯେତେ ଉନ୍ନତି କଲେ ମଧ୍ୟ ଦେଶର ସାମୁହିକ ଉନ୍ନତି ହୋଇ ପାରିବ ନାହିଁ । ଶିଳ୍ପରେ ସମୃଦ୍ଧ ହେଲେ ହିଁ ସେ ଦେଶ ଶକ୍ତିଶାଳୀ ହୋଇପାରିବ । ଶିଳ୍ପର ଉନ୍ନତି ପାଇଁ ସେ ଏକ ଦୀର୍ଘମିଆଦୀ କାର୍ଯ୍ୟକ୍ରମର ଆବଶ୍ୟକତା ଉପଲବ୍ଧି କରିଥିଲେ । ସେଥିପାଇଁ ମହୀଶୂର ରାଜ୍ୟର ଦେୱାନ ହେବା ପୂର୍ବରୁ ମଧ୍ୟ ସେ ଭାରତର ଅର୍ଥନୈତିକ ଉନ୍ନତି ପାଇଁ ପଞ୍ଚବାର୍ଷିକ ଯୋଜନାର ପରିକଳ୍ପନା କରିଥିଲେ । ସେତେବେଳେ 'ଯୋଜନା' ଶବ୍ଦର ବ୍ୟବହାର ବା ପ୍ରଚଳନ ହୋଇ ନଥିଲା । ଖ୍ରୀ ୧୯୧୧ରେ ପ୍ରଥମଥର ପାଇଁ ଭାରତର ପ୍ରଥମ ଅର୍ଥନୈତିକ ସମ୍ମିଳନୀ ମହୀଶୂର ରାଜ୍ୟରେ ଅନୁଷ୍ଠିତ ହୋଇଥିଲା । ଯୋଜନା ବିଷୟରେ ସାଧାରଣ ଲୋକମାନଙ୍କ ଅବଗତି ପାଇଁ ଖ୍ରୀ ୧୯୨୦ରେ ଏକ ଇଂରାଜୀ ପୁସ୍ତକ ସାର୍ ବିଶ୍ୱେଶ୍ୱରୟା ରଚନା କରିଥିଲେ । ଏହା ଲଣ୍ଡନଠାରୁ ପ୍ରକାଶିତ ହୋଇଥିଲା । ସେ ବିଶ୍ୱାସ କରୁଥିଲେ ଯେ କୌଣସି ଦେଶର ଆଭ୍ୟନ୍ତରୀଣ ପ୍ରାକୃତିକ ସମ୍ପଦ ଏବଂ ମାନବ ସମ୍ପଦର ଉପଯୁକ୍ତ ବିନିଯୋଗ ହୋଇ ପାରିଲେ ସେ ଦେଶର ଜନସାଧାରଣଙ୍କ ଦାରିଦ୍ର୍ୟ, ବେକାରୀ ଓ ଦୁର୍ଦ୍ଦଶା ଦୂରହେବା ସହ ସାଧାରଣ ଜୀବନ ଧାରଣର ମାନ ନିଶ୍ଚିତ ଉନ୍ନତି ହେବ ।

ବ୍ରିଟିଶ ସରକାର ଓ ତତ୍କାଳୀନ ଭାରତ ସରକାର ଭାରତରେ ବ୍ରିଟେନ୍ ନିର୍ମିତ ପଦାର୍ଥଗୁଡ଼ିକର ବଜାର ସୃଷ୍ଟି କରିବାରେ ତତ୍ପର ଥିଲେ । ତେଣୁ ଭାରତରେ ଶିଳ୍ପ ପ୍ରତିଷ୍ଠା ପାଇଁ କୌଣସି ସରକାରୀ ପ୍ରୋତ୍ସାହନ ମିଳୁନଥିଲା । ସେଥିପାଇଁ ସାର୍ ବିଶ୍ୱେଶ୍ୱରୟା କହିଥିଲେ, "The practice of purchasing from foreign countries inflicts a double injury; it encourages the drain of capital from the country; it takes away bread from the mouths of our labourers and it prevents the citizens from preparing themselves for future self sufficiency, self help or self defence."

"ବିଦେଶୀ ଦ୍ରବ୍ୟ କିଣିବାରେ ଆମଦେଶକୁ ଦୁଇପ୍ରକାର ଧକ୍କା ଲାଗୁଛି । ପ୍ରଥମେ ଆମ ଦେଶରୁ ମୂଳଧନ ବିଦେଶକୁ ଚାଲିଯାଉଛି, ଦ୍ୱିତୀୟରେ ଆମର ଶ୍ରମିକ ତାର ନିର୍ମାଣ ପାଇଁ ଉଦ୍ଦିଷ୍ଟ ମଜୁରୀ ଏବଂ ତତ୍ ସହ ଭବିଷ୍ୟତର ଆତ୍ମସନ୍ତୋଷ ହରାଉଛନ୍ତି ।"

ସେ ପ୍ରଥମେ ପଞ୍ଚବାର୍ଷିକ ଓ ଦଶବାର୍ଷିକ ଯୋଜନା ପରି ଏକ ଦୀର୍ଘମିଆଦୀ କାର୍ଯ୍ୟକ୍ରମର ପରିକଳ୍ପନା କରିଥିଲେ । ତା'ହେଲେ ପ୍ରତି ରାଜ୍ୟରେ ଗୋଟିଏ ମୌଳିକ ଶିଳ୍ପ, ପ୍ରତି ଜିଲ୍ଲାରେ ଦୁଇଟି ବୃହତ ଶିଳ୍ପ ଏବଂ ପ୍ରତି ତାଲୁକରେ କେତେ ଗୁଡ଼ିଏ କ୍ଷୁଦ୍ର ଶିଳ୍ପ ବା ମ୍ୟାନୁଫ୍ୟାକଚରିଂ ଇଉନିଟ୍ ଗଢିଉଠିବ । ଦେଶରେ ଶିଳ୍ପ କାରଖାନାଗୁଡ଼ିକ ପ୍ରତିଷ୍ଠିତ ହୋଇ ଆବଶ୍ୟକୀୟ ଦ୍ରବ୍ୟ ଉତ୍ପାଦନ ହୋଇ ପାରିଲେ ଆମକୁ ଆଉ ବିଦେଶୀ ରାଷ୍ଟ୍ର ଉପରେ ନିର୍ଭର କରିବାକୁ ପଡ଼ିବ ନାହିଁ । ଆମ ଦେଶର ଅର୍ଥ ଆମ ଦେଶରେ ରହିବ । ଶିଳ୍ପ ପ୍ରତିଷ୍ଠା ଦ୍ୱାରା ଭାରତ ନିଜର ଉତ୍ପାଦିତ ଦ୍ରବ୍ୟ ଅନ୍ୟାନ୍ୟ ଦେଶକୁ ରପ୍ତାନି କରି ବୈଦେଶିକ ମୁଦ୍ରା ଅର୍ଜନ କରିପାରିବ । ପ୍ରତି ଦୀର୍ଘସୂତ୍ରୀ କାର୍ଯ୍ୟକ୍ରମର ଶେଷଭାଗରେ ଜାତୀୟ ଆୟ ଦ୍ୱିଗୁଣିତ ହୋଇପାରିବ । ସେ କହୁଥିଲେ ଦେଶର ଗୋଟିଏ କୋଣରେ ବୃହତ ଶିଳ୍ପଗୁଡ଼ିକ ରହି ଆୟ ବୃଦ୍ଧି କଲେ ଚଳିବ ନାହିଁ, ସେଗୁଡ଼ିକ ପ୍ରତିରାଜ୍ୟରେ ସମାନ ଭାବରେ ପ୍ରତିଷ୍ଠିତ ହେବା ଆବଶ୍ୟକ । ତା'ହେଲେ ପ୍ରତ୍ୟେକ ଅଞ୍ଚଳର ମୂଳଧନ ଓ ଶ୍ରମ ସେହି ଅଞ୍ଚଳରେ ରହିବ ଏବଂ ଶ୍ରମିକମାନଙ୍କର ଗୋଟିଏ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଚାଲିଯିବାର ପ୍ରକ୍ରିୟାକୁ ରୋକାଯାଇ ପାରିବ ।

କେଉଁ ଅଞ୍ଚଳରେ କି ପ୍ରକାର ଶିଳ୍ପ ନିର୍ମିତ ହେବ ତାହା ସେହି ଅଞ୍ଚଳର ଜଳବାୟୁ, କଞ୍ଚାମାଲ ଓ ଖଣିଜ ପଦାର୍ଥ ଉପରେ ନିର୍ଭର କରେ । ତତ୍‌ସହ ବିଦ୍ୟୁତ ଶକ୍ତି ଜଳ ଓ ଗମନାଗମନର ସୁବିଧାଥିବା ଆବଶ୍ୟକ । ରେଳପଥ ଓ ବନ୍ଦରର ସୁବିଧାଥିଲେ ତାହା ଆହୁରି ଉତ୍ତମ । ମୌଳିକ ବା ବୃହତ୍ ଶିଳ୍ପ ମଧ୍ୟରେ ଇସ୍ପାତ, ବିଦ୍ୟୁତ ଯନ୍ତ୍ରପାତି, ବସ୍ତ୍ରଶିଳ୍ପ, ମୋଟର ଗାଡ଼ି ଶିଳ୍ପ ଏବଂ ରାସାୟନିକ କାରଖାନା ପାଇଁ ଅଧିକ ଧ୍ୟାନ ଦିଆଯିବା ଆବଶ୍ୟକ । ହେଲେ ଏହା ସମ୍ଭବ ହେବ କିପରି ?

ସେତେବେଳେ ଭାରତ ପ୍ରତ୍ୟେକ ନିତ୍ୟବ୍ୟବହାର୍ଯ୍ୟ ଜିନିଷପତ୍ର ବିଦେଶରୁ ଆମଦାନୀ କରୁଥିଲା । ଏପରି କି ଦିଆସିଲି, ପେନସିଲ, କଲମ, ସିଲେଇ କରିବା ଛୁଞ୍ଚି ଓ ସୂତା, ପିନ୍, ଛୁରୀ, କଇଁଚି, କାଗଜ, ସାବୁନ, ଗ୍ଲାସପାତ୍ର ଓ ଔଷଧ ପ୍ରଭୃତି ବିଦେଶରୁ ନ ଆସିଲେ ଆମ ଦେଶରେ ବ୍ୟବହାର ହୋଇପାରୁ ନଥିଲା । ଆମ ଦେଶର ଅବସ୍ଥା ଯଦି ଏପରି ହୁଏ, ଆମେ ମୋଟରଗାଡ଼ି ଇଞ୍ଜିନ, ରେଳଇଞ୍ଜିନ, ଇଲେକଟ୍ରିକ ମୋଟର ଓ ଉଡ଼ାଜାହାଜର ପ୍ରଭୃତିର ନିର୍ମାଣ କରିବାର ସ୍ୱପ୍ନ ଦେଖି ପାରିବା କିପରି ? ସାଧାରଣ ଯାନ ଖଣ୍ଡେ ସାଇକେଲର ଉତ୍ପାଦନ ତ ହୋଇପାରୁ ନଥିଲା । ଆମ ଦେଶରକ୍ଷାର ପ୍ରତ୍ୟେକ ସାମଗ୍ରୀ ପାଇଁ ବିଦେଶ ଉପରେ ନିର୍ଭର କରିବାକୁ ପଡୁଥିଲା ।

ବିଶ୍ୱେଶ୍ୱରାୟା ମହୀଶୂରର ପ୍ରଚୁର ନରମ କାଠର ବିନିଯୋଗ କରିବା ପାଇଁ ଏକ ସୁଇଡ଼େନର ଅଭିଜ୍ଞ ଏବଂ ଦିଆସିଲି ଉତ୍ପାଦନ କରିବାରେ ସକ୍ଷମ ବ୍ୟକ୍ତିଙ୍କର ସାହାଯ୍ୟ ନେଲେ । ସିମୋଗାଠାରେ ଏକ ଦିଆସିଲି କାରଖାନା ପ୍ରତିଷ୍ଠା କରି ଜଙ୍ଗଲଜାତ ନରମ କାଠଗୁଡ଼ିକର ସଦ୍ ବିନିଯୋଗ କଲେ ।

ବିଶ୍ୱେଶ୍ୱରୟା ଦେଶବିଦେଶରେ ଭ୍ରମଣ କରି ଶିଳ୍ପ ଓ କୃଷି ବିଷୟରେ ବିଶେଷ ଜ୍ଞାନ ହାସଲ କରିଥିଲେ । ସେ ବୈଦେଶିକ ସାହାଯ୍ୟ ତଥା ବିଦେଶରୁ କାରିଗରୀ ଜ୍ଞାନ କୌଶଳ ହାସଲ କରିବାରେ ନିଶ୍ଚିତ ହୋଇଥିଲେ । କିନ୍ତୁ ସେ ବୈଦେଶିକ ସାହାଯ୍ୟ ଉପରେ ସମ୍ପୂର୍ଣ୍ଣ ନିର୍ଭର କରିବାକୁ ଚାହୁଁ ନ ଥିଲେ କାରଣ ଆମ ଦେଶର ଉତ୍ସାହୀ ଯୁବଶିଳ୍ପୋଦ୍ୟୋଗୀମାନଙ୍କର ମନୋବଳ ତଥା ନିଜ ଗୋଡ଼ରେ ନିଜେ ଛିଡ଼ା ହେବାର ଉତ୍ସାହ ଭାଙ୍ଗିପଡ଼ିବ । ସେ ଚାହୁଁଥିଲେ ବାହାରର କମ୍ପାନୀମାନେ ଆମ ଦେଶର ଲୋକମାନଙ୍କୁ ସାହାଯ୍ୟ କରନ୍ତୁ କିନ୍ତୁ ସେମାନେ ସମ୍ପୂର୍ଣ୍ଣ ରୂପେ ସମ୍ପୃକ୍ତ ନ ହୁଅନ୍ତୁ । ସେ କହୁଥିଲେ, "About the capacity of our people and to raise the status of the country there is much to learn from them. We must welcome their assistance and benefit from their experience. But we must be on the alert, not to allow them to exploit the wealth and resources of our country".

ବିଶ୍ୱେଶ୍ୱରୟା ମହୀଶୂରର ଦେଓ୍ୟାନ ହେବାର ଏକୋଇଶ ମାସ ପରେ ଖ୍ରୀ ୧୯୧୪ ମସିହା ଅଗଷ୍ଟରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ବ୍ରିଟିଶ ସରକାର ନୂତନ ଶିଳ୍ପ ପ୍ରତିଷ୍ଠା କରିବାକୁ ପରମିଟ ବା ମଞ୍ଜୁରୀ ଦେଲେ ନାହିଁ କିମ୍ବା ବାହାରୁ କୌଣସି ମେସିନ ଆଣିବାକୁ ସୁଯୋଗ ଦେଲେ ନାହିଁ । ସେ କେବଳ ଯୁଦ୍ଧରେ କିପରି ଜିତିବେ ତା ଉପରେ ଗୁରୁତ୍ୱ ଦେଉଥିଲେ । ଏହା ସତ୍ତ୍ୱେ ବିଶ୍ୱେଶ୍ୱରୟା ମାଡ୍ରାସର ଅବସର ପ୍ରାପ୍ତ ଶିଳ୍ପ ନିର୍ଦ୍ଦେଶକ ସାର୍ ଆଲଫ୍ରେଡ଼ ଚାଟରଟନ୍‌ଙ୍କୁ ମହୀଶୂରର ଶିଳ୍ପ ନିର୍ଦ୍ଦେଶକ ରୂପେ ଅବସ୍ଥାପିତ କରିଥିଲେ । ମହୀଶୂରର ଶିଳ୍ପ ଉନ୍ନତି ପାଇଁ କି ପ୍ରକାର ସୁଯୋଗ ଓ ସମ୍ବଳ ଅଛି, ତାର ଅନୁସନ୍ଧାନ ପାଇଁ ଭି. ଏସ୍. ଆୟାରଙ୍କୁ ପଠାଗଲା । ଜଙ୍ଗଲ ସମ୍ପଦର ସଦ୍‌ବିନିଯୋଗ ଏବଂ ଶିଳ୍ପର ଉନ୍ନତି ପାଇଁ ଜଙ୍ଗଲ ସଂରକ୍ଷକ ଏମ୍. ରମାରାଓଙ୍କୁ ଦାୟିତ୍ୱ ଦିଆଗଲା ।

ମହୀଶୂରର ରେଶମ ବା ସିଲକ୍ ସମଗ୍ର ଭାରତରେ ସୁନାମ ଅର୍ଜନ କରିଥିଲା, କିନ୍ତୁ ତାହା ସୁସଙ୍ଗଠିତ ଭାବରେ ପରିଚାଳିତ ହେଉ ନ ଥିଲା ଏବଂ ତାର ଉନ୍ନତି ଦିଗରେ ମଧ୍ୟ କୌଣସି ପ୍ରଚେଷ୍ଟା ହୋଇ ପାରୁ ନ ଥିଲା । ବିଶ୍ୱେଶ୍ୱରୟା ଇଟାଲୀର ରେଶମ ଚାଷ ବିଶେଷଜ୍ଞ ସିଙ୍ଗର ଓ୍ୟାସିଙ୍ଗଟନ ମାର୍କଙ୍କ ସହାୟତାରେ ଏହି ଚାଷର ଉନ୍ନତି କରି ବିଦେଶକୁ ମହୀଶୂର ରେଶମ ରପ୍ତାନୀ ହୋଇ ବୈଦେଶିକ ମୁଦ୍ରା ଅର୍ଜନ କଲା । ଭାରତର ରେଶମ କହିଲେ ସେତେବେଳେ କେବଳ ମହୀଶୂର ରେଶମ ବୁଝାଉ ଥିଲା ।

ମହୀଶୂର ଚନ୍ଦନ ସମଗ୍ର ପୃଥିବୀରେ ବିଖ୍ୟାତ । ମହୀଶୂର ଜଙ୍ଗଲରେ ପ୍ରଚୁର ପରିମାଣରେ ଚନ୍ଦନ ଗଛ ମିଳେ । ଆମ ଦେଶର ଲୋକମାନେ ଚନ୍ଦନ

କାଠର ବ୍ୟବହାର ଜାଣିଥିଲେ । କିନ୍ତୁ ଖ୍ରୀ ୧୯୧୬ ପୂର୍ବରୁ ସେଥିରୁ କିପରି ତୈଳ ବାହାର କରଯାଇ ପାରେ ତାହା ଜାଣିନଥିଲେ । ଚନ୍ଦନ କାଠ ସବୁ ନିଲମ ଡ଼କାହୋଇ ଫ୍ରାନ୍‌ସ, ଜର୍ମାନ ଓ ଇଟାଲି ପ୍ରଭୃତି ଦେଶକୁ ଯାଇ ସେଥିରୁ ତୈଳ, ଅର୍କ, ସୁଗନ୍ଧି ଓ ସାବୁନ ଆକାରରେ ଆମ ଦେଶକୁ ପୁଣି ଫେରି ଆସୁଥିଲା । ଫଳରେ ଆମ ଦେଶର ବହୁ ଅର୍ଥ ବିଦେଶକୁ ଚାଲିଯାଉଥିଲା । ବିଶ୍ୱେଶ୍ୱରୟା ଏ ପ୍ରକାର ଏକ ତରଫା ବାଣିଜ୍ୟିକ ସର୍ବସ୍ୱାନ୍ତ ନୀତି ବନ୍ଦ କରିବାକୁ ଚାହିଁଲେ । କିନ୍ତୁ ଏହା ସମ୍ଭବ ହେବ କିପରି ? ଏପରି ଚନ୍ଦନକାଠରୁ ଚନ୍ଦନ ଅର୍କ ବାହାର କରିବା ପ୍ରଣାଳୀ ପୁରାପୁରି ଗୁପ୍ତ ଶିଳ୍ପତଥ୍ୟ ବା ଟ୍ରେଡ୍ ସିକ୍ରେଟ ଥିଲା । ଶିଳ୍ପୋଦ୍ୟୋଗୀମାନେ ଏ ପ୍ରକାର ବୈଷୟିକ ଜ୍ଞାନ କୌଶଳ ଯୋଗାଇ ଦେବାକୁ ରାଜି ହେଲେ ନାହିଁ ।

ବିଶ୍ୱେଶ୍ୱରୟାଙ୍କ ଉପଦେଶ ଅନୁସାରେ ଭାରତୀୟ ବୈଜ୍ଞାନିକମାନେ ପରୀକ୍ଷାଗାରରେ ପରୀକ୍ଷା କରି ଚନ୍ଦନ କାଠରୁ ଚନ୍ଦନ ତୈଳ ବାହାର କରିବାରେ ସଫଳ ହେଲେ । ସେ ଯେତେବେଳେ ଚନ୍ଦନ ତୈଳ କାରଖାନା ପ୍ରତିଷ୍ଠା କରିବାକୁ ଯୋଜନା କଲେ, ସେ ମହୀଶୂର ଦରବାରରେ ଥିବା ଇଂରେଜ ଉପଦେଷ୍ଟାମାନଙ୍କ ବିରୋଧର ସମ୍ମୁଖୀନ ହେଲେ । ସେଥିରେ ସେ ନିରାଶ ନହୋଇ ଖ୍ରୀ ୧୯୧୬ରେ ମହୀଶୂରଠାରେ ଚନ୍ଦନ ତୈଳ କାରଖାନା ପ୍ରତିଷ୍ଠା କଲେ । ସେ ପ୍ରଥମେ ସାତଲକ୍ଷ ଟଙ୍କା ମୂଳଧନରେ ଯୋଜନାଟି ଆରମ୍ଭ ହୋଇ ସାତବର୍ଷ ସଫଳ ପରିଚାଳନା ପରେ ୨୭ ଲକ୍ଷରୁ ଉର୍ଦ୍ଧ୍ୱ ଟଙ୍କାର ଲାଭ ଅର୍ଜନ କରିପାରିଥିଲା ।

ଚନ୍ଦନ ତୈଳ କାରଖାନାରୁ ଯେଉଁ କଞ୍ଚାମାଲ ସଂଗ୍ରହ ହେଲା, ସେଥିରୁ ସାବୁନ ତିଆରି କରିବା ପାଇଁ ବିଶ୍ୱେଶ୍ୱରୟା ଏକ ସାବୁନ କାରଖାନା ପ୍ରତିଷ୍ଠା କଲେ । ସେ ଗରଲପୁରୀ ଶାସ୍ତ୍ରୀଙ୍କୁ ସାବୁନ ଶିଳ୍ପରେ ଅତ୍ୟାଧୁନିକ ଜ୍ଞାନ କୌଶଳ ହାସଲ କରିବାକୁ ବିଦେଶ ପଠାଇଥିଲେ । ରାଜ୍ୟ ସରକାରଙ୍କ ସାହାଯ୍ୟରେ ତୀର୍ଥହାଲି, ମହୀଶୂର ଓ ଚନ୍ନାପାଟଣାଠାରେ ସାବୁନ କାରଖାନା ବସାଇ ସଫଳତା ହାସଲ କରିଥିଲେ । ମହୀଶୂର ସାବୁନ କାରଖାନାର ଚନ୍ଦନ ସାବୁନ ଅତି ଉଚ୍ଚକୋଟିର । ଏହା ବିଦେଶକୁ ରପ୍ତାନି ହୋଇ ବୈଦେଶିକ ମୁଦ୍ରା ଅର୍ଜନ କରାଗଲା । ଏ ପର୍ଯ୍ୟନ୍ତ ମଧ୍ୟ 'Mysore Sandal Soap'ର ନାମ ଦେଶ ବିଦେଶରେ ବେଶ୍ ପରିଚିତ ।

କୌଣସି ଦେଶର ଅର୍ଥନୈତିକ ଅଗ୍ରଗତିରେ ଅର୍ଥହିଁ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ଖ୍ରୀ ୧୯୧୩ରେ ପ୍ରଥମେ ଷ୍ଟେଟ ବ୍ୟାଙ୍କ ଅଫ୍ ମହୀଶୂର ପ୍ରତିଷ୍ଠା କରାଗଲା । ଖ୍ରୀ ୧୯୧୪ରେ ମେକାନିକାଲ ଇଞ୍ଜିନିୟରିଂ ସ୍କୁଲ ଓ ମାଲନାଡ୍ ଉନ୍ନୟନ କମିଟି ଗଠିତ ହେଲା । ଖ୍ରୀ ୧୯୧୫ରେ ମହୀଶୂର ବିଶ୍ୱବିଦ୍ୟାଳୟ ସ୍ଥାପନ କରାଗଲା । ଖ୍ରୀ ୧୯୧୬ରେ ମହୀଶୂର ବାଣିଜ୍ୟ ସଙ୍ଗଠନ, ସରକାରୀ ସାବୁନ ତିଆରି କାରଖାନା, କ୍ରୋମ ଟ୍ୟାନିଂ ଫ୍ୟାକ୍‌ଟେରୀ ଓ ଧାତବ କାରଖାନା ପ୍ରଭୃତି ଗଢ଼ିଉଠିଲା ।

ପ୍ରଥମେ କୌଣସି ନୂତନ ଶିଳ୍ପ ପ୍ରତିଷ୍ଠା କଲେ ଶିଳ୍ପୋଦ୍ୟୋଗୀମାନଙ୍କର ସାହସ ଓ ଦୂରଦୃଷ୍ଟି ଥିବା ଆବଶ୍ୟକ । ପ୍ରଥମେ ପ୍ରଥମେ ସମସ୍ତେ ହତୋତ୍ସାହ ହୋଇ ପଡ଼ନ୍ତି ଓ ଭବନ୍ତି ସମସ୍ତ ମୂଳଧନ ବୁଡ଼ିଯିବ । ବିଶ୍ୱେଶ୍ୱରୟା ଏହି ସବୁ ବାଧାବିଘ୍ନ ଅତିକ୍ରମ କରିବା ପାଇଁ ସରକାରୀ ସ୍ତରରେ ପ୍ରଥମେ ଶିଳ୍ପ ପ୍ରତିଷ୍ଠା କରି ସେଗୁଡ଼ିକ ଲାଭବାନ ହେଲେ, ଘରୋଇ ଲୋକମାନଙ୍କୁ ଦିଆଯିବାକୁ ମନସ୍ଥ କଲେ । ନୂତନଭାବେ ଯିଏ ଶିଳ୍ପ ଆରମ୍ଭ କରିବ ତାଙ୍କୁ ବହୁତ ଗୁଡ଼ିଏ ରିହାତି ସରକାର କିମ୍ବା ବ୍ୟାଙ୍କ ତରଫରୁ ଦିଆଯିବାର ବ୍ୟବସ୍ଥା କରାଗଲା ।

ଶିଳ୍ପର ଉନ୍ନତି ପାଇଁ ବାଙ୍ଗାଲୋରଠାରେ ଏକ କେନ୍ଦ୍ରୀୟ ଶିଳ୍ପ କର୍ମଶାଳା ଏବଂ ପ୍ରତି ଜିଲ୍ଲାରେ ଗୋଟିଏ ଲେଖାଏଁ ଶିଳ୍ପ କର୍ମଶାଳା ନିର୍ମାଣ କରିଥିଲେ । ଯୁବପୀଢ଼ିର ଶିଳ୍ପ ସମ୍ବନ୍ଧୀୟ ତାଲିମ ପାଇଁ ମହୀଶୂରଠାରେ ଏକ ଶିଳ୍ପସ୍କୁଲ ପ୍ରତିଷ୍ଠା କରିଥିଲେ । ପରେ ତାହା ଶ୍ରୀ ଚାମରାଜକେନ୍ଦ୍ର ବୈଷୟିକ ପ୍ରତିଷ୍ଠାନ ହେଲା । ବୈଷୟିକ ଶିକ୍ଷାର ସମ୍ପ୍ରସାରଣ ପାଇଁ ଜିଲ୍ଲାସ୍ତରରେ ଜିଲ୍ଲା ଶିଳ୍ପସ୍କୁଲ ଓ କର୍ମଶାଳା ଆରମ୍ଭ କରିଥିଲେ । ସେ ଦେଶ ବିଦେଶରେ ଥିବା ଶିଳ୍ପକେନ୍ଦ୍ର ଏବଂ ବାଣିଜ୍ୟ କେନ୍ଦ୍ର ପରିଦର୍ଶନ କରିବା ପାଇଁ ଯୁବ ଶିଳ୍ପୋଦ୍ୟୋଗୀମାନଙ୍କୁ ସରକାରୀ ଅଫିସରଙ୍କ ସହ ପଠାଉଥିଲେ । କେତେକ ଶିଳ୍ପୋଦ୍ୟୋଗୀ ଜାପାନ ଯାଇଁ ବିଶେଷ କାରିଗରୀ ଜ୍ଞାନ ହାସଲ କରିଥିଲେ । ଛୋଟ ଛୋଟ ଶିଳ୍ପ କେନ୍ଦ୍ରମାନଙ୍କରେ କିପରି ଇଲେକ୍ଟ୍ରିକ୍ ପାଓ୍ୱାର ବା ବିଦ୍ୟୁତ ଶକ୍ତି ବ୍ୟବହାର କରାଯିବ ସେଥିପାଇଁ ସେ ତତ୍ପର ଥିଲେ ।

ବିଶ୍ୱେଶ୍ୱରୟା ରାଜ୍ୟରେ ଜଳବିଦ୍ୟୁତ୍ ପ୍ରକଳ୍ପ ପାଇଁ ସର୍ବେକ୍ଷଣ କରିଥିଲେ । ଶିଳ୍ପର ଉନ୍ନତି ପାଇଁ ଗମନାଗମନର ସୁବିଧା ପାଇଁ ରାଜପଥ ଏବଂ ରେଳପଥର ସର୍ବେକ୍ଷଣ କରାଇଥିଲେ । ସେ ବିଦ୍ୟୁତ ଶକ୍ତିର ଉପଯୋଗ କରି ଚାଉଳକଳ, ତେଲକଳ, ଲୁଗାବୁଣା ତନ୍ତ ଓ ଆଖୁପେଡ଼ା କଳ ବସାଇଲେ । ମହୀଶୂରର ବହୁଳ ଭାବେ ଆଖୁଚାଷ ଅଞ୍ଚଳ ଯଥା—କୋଲାର, ବାଙ୍ଗାଲୋର ଓ ତୁମ୍କୁରଠାରେ ଆଖୁପେଡ଼ା କଳ ସହିତ ଆଖୁଦୋଉଥ ରକ୍ଷାପାଇଁ ତିନିଗୋଟି କାରଖାନା ସରକାରଙ୍କ ସହାୟତାରେ ବସାଇ ଥିଲେ । ଏହାକୁ ଆଦର୍ଶ ଭାବି ଶିଳ୍ପୋଦ୍ୟୋଗୀମାନେ ଦେଶର ଅନ୍ୟଭାଗରେ କାରଖାନାମାନ ବସାଇ ମହୀଶୂରର ସାଧାରଣ ନାଗରିକମାନଙ୍କର ଆର୍ଥିକମାନ ବୃଦ୍ଧି କରିଥିଲେ ।

ବିଶ୍ୱେଶ୍ୱରୟା ରାଜ୍ୟରେ ହସ୍ତତନ୍ତ ଶିଳ୍ପର ପୁନରୁଦ୍ଧାର କରିଥିଲେ । ବୁଣାକାରମାନଙ୍କୁ ରିହାତି ଦରରେ ହସ୍ତତନ୍ତ ଓ ଅନ୍ୟାନ୍ୟ ଉପକରଣମାନ ଯୋଗାଇ ଦିଆଯାଇଥିଲା । କେନ୍ଦ୍ର ସରକାର ବାଙ୍ଗାଲୋରଠାରେ ଏକ ବୟନଶିଳ୍ପ କାରଖାନା ବସାଇ ସାଧାରଣ ବୁଣାକାରମାନଙ୍କୁ ଅତ୍ୟାଧୁନିକ ଜ୍ଞାନକୌଶଳ ଏବଂ ବୈଷୟିକ କୌଶଳ ଯୋଗାଇ ଦେଲେ । ସେଠାରେ ରେଶମ (Silk) ବୁଣା କୌଶଳ ଏବଂ ହସ୍ତତନ୍ତର ଉପଯୋଗ କରାଗଲା ।

ସାର୍ ବିଶ୍ୱେଶ୍ୱରୟା କହୁଥିଲେ ଦେଶର ଗୌରବ ଓ ମର୍ଯ୍ୟାଦା ପ୍ରାକୃତିକ ସମ୍ପଦର ବିନିଯୋଗ ଶିଳ୍ପ ନିର୍ମାଣ ଉପରେ ନିର୍ଭର କରେ । କୌଣସି ଶିଳ୍ପକୁ ଯଦି ଏକକ ବୋଲି ଧରଯାଏ, ତେବେ ଅନେକ ଗୁଡ଼ିଏ ସାଧାରଣ କର୍ମୀଙ୍କଠାରୁ ଆରମ୍ଭ କରି ସେମାନଙ୍କୁ ଚଳାଇବା ଏବଂ ଦିଗଦର୍ଶନ ଦେଖାଇବାକୁ କେତେଗୁଡ଼ିଏ ଅପେକ୍ଷାକୃତ ଦକ୍ଷ ବ୍ୟକ୍ତିଙ୍କର ଆବଶ୍ୟକ ହୁଏ । ଏହିପରି ଅନେକଗୁଡ଼ିଏ ଏକକ ସୃଷ୍ଟି ହେଲେ ଏବଂ ଏଗୁଡ଼ିକୁ ଦକ୍ଷତା ସହକାରେ ପରିଚାଳନା କଲେ ଦେଶ ସମୃଦ୍ଧ ହେବା ସହ ବେକାରମାନଙ୍କର ସଂଖ୍ୟା କ୍ରମଶଃ ହ୍ରାସପାଏ । ଏକ ଶିଳ୍ପଗୁଡ଼ିକର ଦକ୍ଷ ପରିଚାଳନା ଉଭୟ ସରକାର ଓ ସାଧାରଣ ନାଗରିକମାନଙ୍କ ଉପରେ ନିର୍ଭର କରେ ।

ସାର୍ ବିଶ୍ୱେଶ୍ୱରୟା କହିଥିଲେ, "The way to build a better nation is to build a better individual A successful nation is composed of citizens, the majority of whcm are efficient, of good character and possess a reasonably high sense of duty. An individual who aspires to be trusted should have character. Our people, men and women should strive by their own efforts to lead an honest life.

—*—

ତ୍ରୟୋଦଶ ପରିଚ୍ଛେଦ :

# ଭଦ୍ରାବତୀ ଲୌହ ଓ ଇସ୍ପାତ କାରଖାନା

ସାର୍ ବିଶ୍ୱେଶ୍ୱରୟା ମହୀଶୂରର ଦେଓ୍ୱାନ ଥିବା ସମୟରେ ତାଙ୍କର ଦେଶ ପ୍ରତି ଏକ ମହତ ଅବଦାନ ହେଉଛି, ଭଦ୍ରବତୀ ଲୌହ ଓ ଇସ୍ପାତ କାରଖାନା । ଉନ୍ନତ ଓ ବିକାଶୋନ୍ମୁଖୀ ଦେଶର ସବୁଠାରୁ ଅତି ଜରୁରୀ ଆବଶ୍ୟକତା ହେଉଛି ଲୌହ ଓ ଇସ୍ପାତ । ମହୀଶୂରର କୋଡ଼ଚଦ୍ରୀ ପର୍ବତମାଳାର ବାବାବୁଡ଼ନ ପର୍ବତରେ ପ୍ରଚୁର ପରିମାଣର ଉତ୍କୃଷ୍ଟମାନର ଲୌହ ପଥର ମିଳୁଥିଲା । ସେଗୁଡ଼ିକୁ ତରଳାଯାଇ ପାଇପ ସାହାଯ୍ୟରେ ମାଙ୍ଗାଲୋର ବନ୍ଦର ପର୍ଯ୍ୟନ୍ତ ନିଆଯାଇ ସେଠାରୁ ବାଷ୍ପଚାଳିତ ଜାହାଜ ସାହାଯ୍ୟରେ ବିଦେଶ ପଠାଯାଉଥିଲା । ଇରାନ ଦେଶ ଏହି ଯୋଜନାରେ ସହାୟତା କରି ସମସ୍ତ କଞ୍ଚାମାଲ ନେଉଥିଲା । ତତ୍କାଳୀନ ଇରାନ-ଇରାକ ଯୁଦ୍ଧ ଯୋଗୁଁ ଇରାନ ସମସ୍ତ କଞ୍ଚାମାଲ ନେଲା ନାହିଁ । ଜାପାନ ଓ ଅନ୍ୟ ଦେଶମାନେ ତାଙ୍କର ଚାହିଦା ମୁତାବକ କଞ୍ଚାମାଲ ନେଲେ । ବିଶ୍ୱେଶ୍ୱରୟା କହିଲେ ଆମେ ଯଦି ଏକ କାରଖାନା ବସାଇ ଏହାର ସଦ୍‌ବିନିଯୋଗ କରିବା ତାହା ହେଲେ ଆମର ଲୌହଇସ୍ପାତ ଚାହିଦା ପୂରଣ ହୋଇ ବିଦେଶକୁ ମଧ୍ୟ ରପ୍ତାନି କରିପାରିବା ।

କୌଣସି ଲୌହ ପଥରକୁ ଲୌହରେ ପରିଣତ କରିବାକୁ ହେଲେ ପ୍ରଥମେ ଆମର କୋଇଲା ଓ କାଲସିୟମର ଆବଶ୍ୟକତା ପଡ଼ିଥାଏ । କୋଇଲା ଆଖପାଖରେ ନଥିବାରୁ ଦୂରରୁ ପରିବହନ କରି ଆଣିବା ବ୍ୟୟସାପେକ୍ଷ । ତେଣୁ ମହୀଶୂର ଜଙ୍ଗଲରେ ଜାଳେଣି କାଠର ପ୍ରାଚୁର୍ଯ୍ୟ ଥିବାରୁ ପ୍ରଚୁର ପରିମାଣରେ କାଠ କୋଇଲା ମିଳିପାରିବ । କାଠକୁ ଖଣ୍ଡ ଖଣ୍ଡ କରି ମାଟିରେ ଘୋଡ଼ାଇ ଦେଇ ସେଥିରେ ନିଆଁ ଲଗାଇଲେ କାଠ କୋଇଲା ଉତ୍ପାଦିତ ହେବ । କାଠ କୋଇଲା ବ୍ୟବହାର କରିବା କିଛି ନୂଆ କଥା ନୁହେଁ । ଏହି ପଦ୍ଧତି ଜାପାନ ଓ ସୁଇଡେନ୍ ପୂର୍ବରୁ ଅନୁସରଣ କରୁଥିଲେ ।

ଖ୍ରୀ୧୯୧୫-୧୬ରେ ପ୍ରଥମେ ଏକ ପ୍ରାଥମିକ ଅନୁସନ୍ଧାନ କାର୍ଯ୍ୟ ଆରମ୍ଭ କରାଗଲା । ଏହି ଅନୁସନ୍ଧାନ କାର୍ଯ୍ୟରେ ଜାମସେଦପୁର ଠାରେ ଥିବା ଟାଟା ଲୌହ ଓ ଇସ୍ପାତ କାରଖାନାର ବିଶେଷଜ୍ଞ ସି. ପି. ପେରିନ ପରାମର୍ଶ ଦେବା ସହ ଏହାର ରିପୋର୍ଟକୁ ଅନୁମୋଦନ କରିଥିଲେ । ଏହାର ଜାଳେଣି ରୂପେ କାଠ କୋଇଲା ବ୍ୟବହାର ହେବା ପାଇଁ ସ୍ଥିର କରାଗଲା । ଏହି କାଠ ୭୫୬ ବର୍ଗମାଇଲ ଜଙ୍ଗଲରୁ ଟ୍ରାମ ବା ରେଳ ଯୋଗେ ଭଦ୍ରାବତୀକୁ ଅଣାଯିବାର ପ୍ରସ୍ତାବ ଥିଲା । ପ୍ରସ୍ତାବିତ ଭଦ୍ରାବତୀ ସ୍ଥାନଟି କର୍ଣ୍ଣାଟକର ଶୈଳ ନିବାସ କେମ୍ମାନ୍ନଗୁଣ୍ଡିର ପାଦ ଦେଶରେ

ଅବସ୍ଥିତ । ଏହା ବାବାବୁଦ୍‌ନ ପାହାଡ ଶ୍ରେଣୀରେ ଅବସ୍ଥିତ । ଏଠାରେ ପ୍ରଚୁର କଫି ଚାଷ ହୁଏ । ପ୍ରସ୍ତାବିତ ସ୍ଥାନର ପ୍ରକୃତ ନାମ ବେଙ୍କିପୁର ବା ଆଗ୍ନେୟ ସହର ଥିଲା । ସେଠାରେ ମଧ୍ୟ ବହୁ ପୁରାତନ ସମୟରୁ ଲୁହାପଥରକୁ ତରଳାଇ ଲୁହୁରା ବା କମାରମାନେ ଲୌହ ଆମଦାନୀ କରୁଥିଲେ । ଏହି ସହର ନିକଟରେ ଭଦ୍ରାବତୀ ନଦୀ ପ୍ରବାହିତ ହେଉଥିବାରୁ ଏହି ସହରର ନାମ ଭଦ୍ରାବତୀ । ଲୌହ ଓ ଇସ୍ପାତ ଶିଳ୍ପ ପାଇଁ ଏହା ଉପଯୁକ୍ତ ସ୍ଥାନ ବୋଲି ସ୍ଥିର ହେଲା । ଭଦ୍ରାବତୀ ଲୌହ ଓ ଇସ୍ପାତ କାରଖାନା ପରେ ପରେ ମହୀଶୂର ଲୌହ ଓ ଇସ୍ପାତ କାରଖାନା ହେଲା । ସର୍ବଶେଷରେ ବିଶ୍ୱେଶ୍ୱରୟା ଏହାକୁ ପ୍ରତିଷ୍ଠା କରିଥିବାରୁ ଏହାର ନାମକରଣ କରାଯାଇ ବିଶ୍ୱେଶ୍ୱରୟା ଲୌହ ଓ ଇସ୍ପାତ କାରଖାନା ହେଲା ।

ବିଶେଷଜ୍ଞ ସି. ପି. ପେରିନ ଯେଉଁ ଅଟକଳ ଅନୁମୋଦିତ କରିଥିଲେ ତାର ସଂକ୍ଷିପ୍ତ ସୂଚନା ନିମ୍ନରେ ପ୍ରଦତ୍ତ ହେଲା ।

୧ । ରେଳ ଲାଇନ ବିସ୍ତାରିତ ଏବଂ ରେଳ ପରିବହନ ଟ ୨୯,୪୦,୫୦୦.୦୦

୨ । କାଲସିୟମ କାରବାଇଡ୍ ଉତ୍ପାଦନ ଓ ଫରନେସ୍ ସ୍ଥାପନ ଟ ୪୩,୧୯,୩୪୦.୦୦

---

ମୋଟ ମୂଳଧନ ଟ ୬୩,୫୯,୮୪୦.୦୦

୩୦୦୦୦ ଟନ ଲୁହା ପଥର ତରଳାଇବା ପାଇଁ ପ୍ରାୟ ୭୩୦୦୦ ଟନ୍ କାଠ ଆବଶ୍ୟକ ହୋଇଥାଏ । ସେଥିରୁ ଯେଉଁ ପିଗ୍ ଆଇରନ ବା ଲୌହ ପିଣ୍ଡ ଉତ୍ପାଦନ ହୁଏ ତାର ମୂଲ୍ୟ ପ୍ରାୟ ଟ ୧୫,୯୮,୭୨୬.୦୦ ହେବ । ସି. ପି. ପେରିନଙ୍କର ଏହି ରିପୋର୍ଟ ଅନ୍ୟ ବିଶେଷଜ୍ଞଙ୍କ ନିକଟକୁ ପଠାଯାଇଥିଲା । ବିଭିନ୍ନ ମତ ପ୍ରକାଶ ପାଇଲେ ମଧ୍ୟ ଅର୍ଥନୈତିକ ଦିଗ ଉପରେ ସହମତି ପ୍ରକାଶ ପାଇଲା ।

ଭାରତ ସରକାରଙ୍କର ଅର୍ଥ ସଚିବ ଜେ. ଏସ୍. ଚକ୍ରବର୍ତ୍ତୀ ଯିଏ କନ୍ନାମବାଡ଼ି ଡ୍ୟାମ ନିର୍ମାଣର ବିରୋଧ କରୁଥିଲେ ସେ ଏହି ରିପୋର୍ଟର ଅନୁକୂଳ ମତ ଦେଇ ବାର ପ୍ରତିଶତ ଲାଭ ହେବ ବୋଲି କହିଥିଲେ । କେତେକ ବିଶେଷଜ୍ଞ କାଲସିୟମ କାରବାଇଡ୍ ଉତ୍ପାଦନ ବନ୍ଦ କରିବା ପାଇଁ ମତ ଦେଲେ । କେତେକ କହିଲେ ଏହାର ଅଟକଳ ଆଉ ୨୦ ଲକ୍ଷ ବଢ଼ିବ ଏବଂ ଅନ୍ୟମାନେ କହିଲେ ଏକ କୋଟିକୁ ଟପିଯିବ ।

କାଉନସିଲର ଦ୍ୱିତୀୟ ସଭ୍ୟ ସାର୍. ଆଲବିନ ବାନାର୍ଜି ଏହି ରିପୋର୍ଟକୁ ସମ୍ପୂର୍ଣ୍ଣ ବିରୋଧ କରୁଥିଲେ । ସେ କହୁଥିଲେ ବର୍ତ୍ତମାନ ଯୁଦ୍ଧ ଚାଲିଛି, ରେଳ ଯନ୍ତ୍ରପାତି ଓ ଆବଶ୍ୟକ ସାମଗ୍ରୀ ଯୋଗାଇବା ସମ୍ଭବ ନୁହେଁ । ଜଙ୍ଗଲ ବିଭାଗ ମଧ୍ୟ ଏତେ ପରିମାଣ କାଠ ଯୋଗାଇ ପାରିବ ନାହିଁ ।

ଖଣି ଓ ଭୂତତ୍ତ୍ୱ ନିର୍ଦ୍ଦେଶକ ଡଃ. ସ୍ମିଥ୍ ମତ ଦେଲେ ଯେ ଏହି କାରଖାନା ସରକାରୀ ସହାୟତାରେ ଚଳାଇବା ସମ୍ଭବ ନୁହେଁ । କୌଣସି ଏକ ଘରୋଇ ସଂସ୍ଥା ସଙ୍ଗେ ଚୁକ୍ତି କରି ପରିଚାଳନା କରିବା ଉଚିତ । ସେ ଇଂଲଣ୍ଡର "ଓ୍ୟାରକିଙ୍ଗଟନ୍ ଆଇରନ ଏଣ୍ଡ ଷ୍ଟିଲ କମ୍ପାନୀ" ସହିତ ଚୁକ୍ତି କରିବାକୁ ପରାମର୍ଶ ଦେଲେ ।

ଭଦ୍ରାବତୀ ଲୌହ ଓ ଇସ୍ପାତ କାରଖାନା ପ୍ରତିଷ୍ଠାକୁ ମହୀଶୂର ରାଜ-ଦରବାରର ଇଂରେଜ ଓ ଭାରତୀୟ ଅଫିସରମାନେ ଅନୁମୋଦନ କରୁ ନ ଥିଲେ । ସେମାନେ କହୁଥିଲେ କାଠରୁ କାଠ କୋଇଲା ବାହାର କରି ଲୁହା ପଥର ତରଳାଇ ଲୁହା କୌଣସି ସ୍ଥାନରେ ବାହାରୁ ନାହିଁ । ଜାପାନରେ ମଧ୍ୟ ଅତି ସୀମିତ ସ୍ଥାନରେ ଛୋଟ ଛୋଟ କାରଖାନା ହୋଇଛି । ଏପରି ବୃହତ୍ ଧରଣର କୌଣସି ସ୍ଥାନରେ ନାହିଁ । ଭାରତରେ ସେତେବେଳେ କେବଳ ଜାମସେଦପୁର ଠାରେ ଟାଟା ଲୌହ ଓ ଇସ୍ପାତ କାରଖାନା ଥିଲା । କିନ୍ତୁ କାଠ କୋଇଲାକୁ ଜାଳେଣି ରୂପେ ବ୍ୟବହାର କରି ଲୌହ ଉତ୍ପାଦନ ସମ୍ଭବପର ହେଉନଥିଲା । ଏହା ସତ୍ତ୍ୱେ ସେମାନେ ବିଶ୍ୱେଶ୍ୱରୟାଙ୍କୁ ଖୋଲା ଖୋଲି ଭାବରେ ବିରୋଧ କରି ପାରୁନଥିଲେ ।

ବିଶ୍ୱେଶ୍ୱରୟା କହିଲେ ଯୁଦ୍ଧ ବହୁଦିନ ଲାଗିପାରେ । ଯୁଦ୍ଧ ଚାଲୁଥିଲେ ମଧ୍ୟ 'ଟାଟା ଆଇରନ ଆଣ୍ଡ ଷ୍ଟିଲ କମ୍ପାନୀ' ନିଜ କାରଖାନାର ସଂପ୍ରସାରଣ କରିଚାଲିଛି । ଲୌହ କାରଖାନା ଏକ ମୌଳିକ କାରଖାନା ହୋଇଥିବାରୁ କାରଖାନା ପ୍ରତିଷ୍ଠା ହେବା ଉଚିତ୍, ଯେହେତୁ ଏହା ଦେଶର ଅର୍ଥନୈତିକ ଦିଗକୁ ମଜଭୁତ କରିବ । ଶେଷରେ ବିଶେଷଜ୍ଞ ସି. ପି. ପେରିନ ଯେଉଁ ରିପୋର୍ଟ ଦାଖଲ କରିଥିଲେ, ସରକାର ତାକୁ ଅନୁମୋଦନ କଲେ ଏବଂ ମହୀଶୂର ସରକାର ଟାଟା ଆଇରନ ଆଣ୍ଡ ଷ୍ଟିଲ କମ୍ପାନୀକୁ ମ୍ୟାନେଜିଙ୍ଗ ଏଜେଣ୍ଟ ରୂପେ ନିଯୁକ୍ତ କଲେ । ତତ୍କାଳୀନ ଭାରତ ସରକାର ଏହାକୁ ଅନୁମୋଦନ କଲେ । ଖ୍ରୀ ୧୯୧୮ ମେ ମାସରେ ଉଭୟ ପାର୍ଟି ମଧ୍ୟରେ ଚୁକ୍ତି ପତ୍ର ସ୍ୱାକ୍ଷରିତ ହେଲା ।

ଭଦ୍ରାବତୀ ଲୌହ ଓ ଇସ୍ପାତ କାରଖାନାର ସମ୍ପୂର୍ଣ୍ଣ ନିର୍ମାଣ ଦାୟିତ୍ୱ ନିଉୟର୍କର ପେରିନ ଆଣ୍ଡ ମାର୍ଶାଲ ଫାର୍ମକୁ ଦିଆଗଲା । ସରକାରଙ୍କର ଦାୟିତ୍ୱ ହେଲା ଶକ୍ତି, ଲୁହା ପଥର ଏବଂ ଜାଳେଣି ଯୋଗାଣ । ପେରିନ ଆଣ୍ଡ ମାର୍ଶାଲର ଦାୟିତ୍ୱ ହେଲା ସମସ୍ତ ଯନ୍ତ୍ରପାତି ଓ ମେସିନ ଖଞ୍ଜି କାରଖାନାକୁ ଚାଲୁ ଅବସ୍ଥାରେ ହସ୍ତାନ୍ତର କରିବା । ଟାଟା କମ୍ପାନୀ ଏହାର ପରିଚାଳନା ଦାୟିତ୍ୱରେ ରହିଲେ ।

ଏହି ପ୍ରୋଜେକ୍ଟର ପ୍ରାଥମିକ ଅଟକଳ ଟ ୬୩.୫୯ ଥିବା ସ୍ଥଳେ ଏହାର ପ୍ରକୃତ ଅଟକଳ ଟ ୯୪ ଲକ୍ଷରେ ଅନୁମୋଦିତ ହେଲା ଏବଂ ଖ୍ରୀ ୧୯୨୨ରେ ଏହାର ସଂଶୋଧିତ ଅଟକଳ ଟ ୨୧୧ ଲକ୍ଷକୁ ବୃଦ୍ଧି ପାଇଲା । ପ୍ରାଥମିକ ରିପୋର୍ଟ ଅନୁସାରେ ୧୨୫ ମାଇଲ ସ୍ଥାୟୀ ରେଳପଥ ଓ ୪୫ ମାଇଲ ଅସ୍ଥାୟୀ ରେଳପଥ ନିର୍ମାଣର

ବ୍ୟବସ୍ଥା ଥିଲା । ସେଥିରେ ୧୨ଟି ରେଳଇଞ୍ଜିନ ଓ ୨୫୦ଟି ଓ୍ୱାଗନ ରହିବାର ବନ୍ଦୋବସ୍ତ କରାଗଲା । କିନ୍ତୁ ରେଳପଥରେ ପରିବହନ ବଦଳରେ ୫୦୦୦ ଫୁଟ ଉଚ୍ଚ ବାବାବୁଡ଼େନ ପର୍ବତ ଶ୍ରେଣୀର କେମ୍ମନଗୁଣ୍ଡିଠାରୁ ମାତ୍ର ପାଞ୍ଚ କିଲୋମିଟର ଲମ୍ବ ରୋପଓ୍ୱେ ସାହାଯ୍ୟରେ ପାହାଡ଼ର ପାଦଦେଶରେ ଥିବା ଟାନିଜେବାଇଲଠାରେ ଟ୍ରାମରେ ବୋଝାଇ ହୋଇ ୨୪ ମାଇଲ ବାଟ ଆସି କାରଖାନାରେ ଖଲାସ ହେଲା । ଏହି ରୋପଓ୍ୱେରେ ପ୍ରତି ତିନିଶହ ଫୁଟ ବା ୯୦ ମିଟର ଦୂରରେ ଗୋଟିଏ ଗୋଟିଏ ବାଲଟି (ବକେଟ) ଇସ୍ପାତ ଦଉଡ଼ିରେ ଝୁଲହୋଇ ମାଲ ପରିବହନ ହେଲା । ଏହି ଦୋଳାୟମାନ ଦଉଡ଼ି ରାସ୍ତା ଇଲେକ୍ଟ୍ରିକ ଶକ୍ତି ଓ ମାଧ୍ୟାକର୍ଷଣ ଶକ୍ତି ବଳରେ ଚାଲିଲା । ଏହା ଘଣ୍ଟା ପ୍ରତି ୧୦ ଟନ ମାଲ ପରିବହନ କରିପାରିଲା । ଦିନକୁ ୩୦ ଲକ୍ଷ ଗ୍ୟାଲନ ପାଣି ଆବଶ୍ୟକ ହେଲା । ଭଦ୍ରାବତୀ ନଦୀରୁ ପ୍ରଚୁରପାଣି ମିଳିଲା ।

ଜଙ୍ଗଲରୁ କାଠ ବିଧାସଳଖ ଟ୍ରାମରେ ଅଣାଯାଇ ଫର୍ନେସ ମଧ୍ୟରେ ଭର୍ତ୍ତି କରାଗଲା । ସେଥିରୁ ଦିନେ ବା ଦୁଇଦିନ ମଧ୍ୟରେ ଉତ୍ତମ ମାନର କାଠକୋଇଲା ଉତ୍ପାଦନ ହେଲା । ସେଥିରୁ ଯେଉଁ ଆନୁସଙ୍ଗିକ ଦ୍ରବ୍ୟ (By-products) ଉତ୍ପାଦନ ହେଲା, ତାହା ମଧ୍ୟ ମୂଲ୍ୟବାନ ଥିଲା । ସେଥିମଧ୍ୟରୁ କାଲସିୟମ ଆସିଟେଟ, ଆସେଟିକ୍ ଏସିଡ୍, ମେଥାନଲ, ଆସେଟୋନ, ଉଡ଼ଟାର ପ୍ରଭୃତି ଅନ୍ୟତମ । ଉଡ଼ଟାର ରାସ୍ତା ନିର୍ମାଣରେ ବ୍ୟବହୃତ ହେଲା । ରାସ୍ତା ଉପରେ ପିଚ୍ କରିବାରେ ଏହାର ଚାହିଦା ବଢ଼ିଗଲା । କାଠକୋଇଲା ବ୍ୟବହୃତ ହୋଇ ଯେଉଁ ପିଗ୍-ଆଇରନ ଉତ୍ପାଦନ ହେଲା ତାର ଆଦର ଜାପାନରେ ବଢ଼ିଲା । ଏଠାରେ ଯେତେ ଉତ୍ପାଦନ ହେଲା ତାହା ସବୁ ଜାପାନ କିଣିନେଲା । କାଠ ଜାଳେଣି ରୂପେ ବ୍ୟବହୃତ ହୋଇ କାଠକୋଇଲା ଉତ୍ପାଦନ ହେବା ସମୟରେ ଫରନେସ୍‌ରୁ ଯେଉଁ ଗରମ ପବନ ବାହାରିଲା, ସେଥିରୁ ବିଦ୍ୟୁତ ଶକ୍ତି ଉତ୍ପାଦନ ହେଲା । ସେଥିରୁ ଅନ୍ୟାନ୍ୟ ଇଞ୍ଜିନ ମଧ୍ୟ ଚାଲିପାରିଲା ।

ଭଦ୍ରାବତୀ ଲୌହ ଇସ୍ପାତ କାରଖାନାର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇ ନଥିଲେ ମଧ୍ୟ ସେଥିରୁ ଉତ୍ତମ ପିଗ୍-ଆଇରନର ଉତ୍ପାଦିତ ହେଲା । ସେତେବେଳେ ଟନ ପିଛା ଉତ୍ପାଦନ ଖର୍ଚ୍ଚ ମାତ୍ର ତିରିଶ ଟଙ୍କା ପଡ଼ିଲା ବେଳକୁ ଟନ ପିଛା ବିକ୍ରୟ ମୂଲ୍ୟ ଷାଠିଏ ଟଙ୍କା ଦର ଥିଲା । ତେଣୁ ଟନ ପ୍ରତି ତିରିଶ ଟଙ୍କା ଲାଭ ହେବାରୁ ସମସ୍ତେ ଉତ୍ସାହିତ ହେଲେ । ବିଶ୍ୱଯୁଦ୍ଧ ଚାଲୁଥିବାରୁ ଇସ୍ପାତ ଚାହିଦା ସହ ଦର ମଧ୍ୟ ବଢ଼ିଚାଲିଲା । ଯୁଦ୍ଧ ବନ୍ଦ ସହ ଇସ୍ପାତ ଦର କମିବାକୁ ଲାଗିଲା । ଏପରିକି ଟନ ପିଛା ଏକଶତ ଟଙ୍କାରୁ ପଇଁଚାଳିଶ ଟଙ୍କାକୁ କମି ଆସିଲା ।

ଦୁଃଖ ଯେତେବେଳେ ଆସେ ଏକୁଟିଆ ଆସେ ନାହିଁ । ସେ ତାର ସାଙ୍ଗ ସାଥୀ ଓ କୁଟୁମ୍ବ ସହ ଆସେ । ସେହିପରି ଭଦ୍ରାବତୀ ଲୌହ ଓ ଇସ୍ପାତ କାରଖାନାର ଗୋଟିଏ ପରେ ଗୋଟିଏ ଅସୁବିଧା ଆସି ପହଞ୍ଚିଲା । କାଠ କାଟିବା ପାଇଁ ଯେଉଁ କରତ ଲାଗିଥିଲା ତାହା ଆଉ ଟାଣକାଠକୁ କାଟିପାରିଲା ନାହିଁ । ଯେଉଁ ବଏଲର ଥିଲା

ସେ ଆଉ ପ୍ରଚୁର ପରିମାଣରେ ଜଳୀୟବାଷ୍ପ ଯୋଗାଇ ପାରିଲା ନାହିଁ । ପିଗ୍-ଆଇରନ ଓ ବାଇପ୍ରୋଡ଼କ୍ଟର ଉତ୍ପାଦନ ଆଶାତୀତ ଭାବେ କମିଗଲା । କାହାରି ସହିତ କାହାର ସହଯୋଗ ରହିଲା ନାହିଁ । ସମନ୍ୱୟର ଅଭାବ ରହିଲା । କୁଶଳୀ ଓ ଅର୍ଦ୍ଧ କୁଶଳୀ କାରିଗରମାନଙ୍କର ଅଭାବ ରହିଲା । ଏପରିକି କାରଖାନାର ହିସାବ କିତାବ ମଧ୍ୟ ଠିକ୍ ରହିଲା ନାହିଁ । କାରଖାନାର ଉତ୍ପାଦନ ଦିନକୁ ୫୭ ଟନ ଲୌହପିଣ୍ଡ ଏବଂ ୨୦୦ ଟନ କାଠ କୋଇଲା ଉତ୍ପାଦନ ହେବା କଥା, କିନ୍ତୁ ଏହାର ଉତ୍ପାଦନ ପଚାଶ ପ୍ରତିଶତ ତଳକୁ କମିଗଲା ।

ଏହି ଅବସ୍ଥା ଦେଖିବାକୁ ସେଠାରେ ସାର୍ ବିଶ୍ୱେଶ୍ୱରୟା ଆଉ ନଥିଲେ । ସେ ଖ୍ରୀ ୧୯୧୮ରେ ଦେଓ୍ୱାନ ପଦରୁ ସ୍ୱେଚ୍ଛାକୃତ ଭାବରେ ଅବସର ନେଇ ବମ୍ବେରେ ରହୁଥିଲେ । ସେଠାରେ ଯେତେକ ଉଚ୍ଚ ପଦସ୍ଥ ସରକାରୀ ଅଫିସର ଥିଲେ ସେମାନେ କାରଖାନା ବନ୍ଦ କରିଦେବାକୁ ଉପଦେଶ ଦେଲେ । ନିର୍ମାଣ ଦାୟିତ୍ୱ ଏବଂ ମ୍ୟାନେଜ୍‌ମେଣ୍ଟ ବୋର୍ଡର ସଭ୍ୟ ଥିବା ପେରିନ୍ ଓ ମାର୍ଶାଲ କମ୍ପାନି ଏବଂ ଅନ୍ୟ ପରାମର୍ଶ ଦାତା ଇଞ୍ଜିନିୟରମାନେ ଲୌହ ଓ ଇସ୍ପାତର ଆନ୍ତଃର୍ଦେଶୀୟ ମୂଲ୍ୟ ବୃଦ୍ଧି ନହେଲା ପର୍ଯ୍ୟନ୍ତ କାରଖାନାକୁ ସମ୍ପୂର୍ଣ୍ଣ ବନ୍ଦ କରିବାକୁ ମତ ଦେଲେ । ମ୍ୟାନେଜମେଣ୍ଟ ବୋର୍ଡ ଏହି ପ୍ରସ୍ତାବକୁ ଅନୁମୋଦନ କଲା ।

ଭଦ୍ରାବତୀ ଲୌହ ଓ ଇସ୍ପାତ କାରଖାନାଟି ସମ୍ପୂର୍ଣ୍ଣ ବନ୍ଦ ହୋଇଯିବ, ଏ ବିଷୟ ମହୀଶୂର ମହାରାଜା ହୃଦୟଙ୍ଗମ କଲେ ଏବଂ ସେ ଅନୁଭବ କଲେ ଯେ, ମ୍ୟାନେଜମେଣ୍ଟ ବୋର୍ଡ ତାର ନିଜ କର୍ତ୍ତବ୍ୟ ତୁଲାଇବା ପାଇଁ ସମ୍ପୂର୍ଣ୍ଣ ଅପାରଗ । ସେ ସାର୍ ବିଶ୍ୱେଶ୍ୱରୟାଙ୍କୁ ମନେ ପକାଇଲେ । ସେ କହିଲେ ଯିଏ ଏହି କାରଖାନାର ଜୀବନ୍ୟାସ ଦେଇଛନ୍ତି, ସେ ଏହି କାରଖାନାକୁ ପୁଣି ପୁନର୍ବିନ୍ୟାସ କରିପାରିବେ । ସେ ତତ୍କାଳୀନ ଦେଓ୍ୱାନ ଏ. ଆର. ବାନାର୍ଜିଙ୍କୁ ଆଦେଶ ଦେଲେ ତୁରନ୍ତ ତାର ବାର୍ତ୍ତାଯୋଗେ ସାର୍ ବିଶ୍ୱେଶ୍ୱରୟାଙ୍କୁ ଅନୁରୋଧ କରି ଡ଼କାଇ ଅଣାଯାଉ ।

ସାର୍ ବିଶ୍ୱେଶ୍ୱରୟା ଏହି ଚ୍ୟାଲେଞ୍ଜକୁ ଗ୍ରହଣ କଲେ ଗୋଟିଏ ସର୍ତ୍ତରେ । ଯଦି ତାଙ୍କୁ ମୁକ୍ତ ହସ୍ତରେ ସମସ୍ତ କାର୍ଯ୍ୟ କରିବାକୁ ସୁଯୋଗ ଦିଆଯିବ ତା'ହେଲେ ସେ ଏହାର ପୁନର୍ବିନ୍ୟାସ କାର୍ଯ୍ୟକ୍ରମକୁ ହାତକୁ ନେବେ । ତାହାହିଁ ହେଲା, ସ୍ୱୀକୃତି ମିଳିଲା । ନିଉୟର୍କର ପେରିନ ଆଣ୍ଡ ମାର୍ଶାଲ ଯିଏ ନିର୍ମାଣ କାର୍ଯ୍ୟ ଅଧାରୁ ଛାଡ଼ି କାରଖାନା ବନ୍ଦ କରିବାକୁ ପରାମର୍ଶ ଦେଇଥିଲେ ତାଙ୍କୁ କେବୁଲ ବାର୍ତ୍ତା ପଠାଇ ଭଦ୍ରାବତୀକୁ ଆସିବାକୁ କୁହାଗଲା । ପେରିନ ୧୬ ଜଣ ଇଞ୍ଜିନିୟର ଓ ଫୋରମ୍ୟାନଙ୍କୁ ନେଇ ଏକ ସ୍ୱତନ୍ତ୍ର ବିମାନରେ ଆସି ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କଲେ । କାରଖାନାଟିକୁ ସମ୍ପୂର୍ଣ୍ଣ ରୂପେ କାର୍ଯ୍ୟକ୍ଷମ କରାଇ ଜଣେ ଆମେରିକାନ ଅଫିସର ଓ ଦୁଇଜଣ ଫୋରମ୍ୟାନଙ୍କୁ ଦାୟିତ୍ୱ ଦେଇ ଚାଲିଗଲେ ।

ବିଶ୍ୱେଶ୍ୱରୟା ପ୍ରଥମେ ବୋର୍ଡ ଅଫ ମ୍ୟାନେଜମେଣ୍ଟକୁ ପୁନର୍ଗଠନ କଲେ । ସେ ନିଜେ ବୋର୍ଡର ଚେୟାରମ୍ୟାନ ହେବା ପାଇଁ ସ୍ୱୀକୃତି ଦେଲେ । କାରଖାନାର ସମସ୍ତ କାର୍ଯ୍ୟକୁ ସାତ ଭାଗରେ ବିଭକ୍ତ କଲେ । ୧—ପ୍ରଶାସନ ଓ ନିର୍ଦ୍ଦେଶ, ୨—କେନ୍ଦ୍ରୀୟ କାର୍ଯ୍ୟ, ୩—ଗବେଷଣା କାର୍ଯ୍ୟ, ୪—ସହର ଓ ଅନ୍ୟାନ୍ୟ କାର୍ଯ୍ୟ, ୫—ଜଙ୍ଗଲ, ୬—ଖଣି ଓ ୭—ରେଳ ବିଭାଗ । ପ୍ରତ୍ୟେକ ବିଭାଗରେ ଜଣେ ଜଣେ ମୁଖ୍ୟ ରହି କାର୍ଯ୍ୟ ପରିଚାଳନା କଲେ । ପ୍ରତ୍ୟେକ ମୁଖ୍ୟମାନଙ୍କୁ ନିର୍ଦ୍ଦେଶ ଦେଲେ ସାପ୍ତାହିକ ପ୍ରୋଗ୍ରେସ ରିପୋର୍ଟ ପ୍ରତି ସୋମବାର ଏବଂ ମାସିକ ପ୍ରୋଗ୍ରେସ ରିପୋର୍ଟ ମାସ ଶେଷରେ ଠିକ୍ ସମୟରେ ଦେବାକୁ । ସେଥିରେ ମାସିକ ଉତ୍ପାଦନ ଓ ବିକ୍ରିର ବିବରଣୀ, ଜମା ଓ ଖର୍ଚ୍ଚର ବିବରଣୀ, କେଉଁ କେଉଁ ଜିନିଷ କିଣା ହେଲା, ତାର ମୂଲ୍ୟ ସହ ବିବରଣୀ ଦେବାକୁ କୁହାଗଲା । ଲକ୍ଷ୍ୟସ୍ଥଳରେ ପହଞ୍ଚିବାରେ ଯଦି କିଛି କମିଗଲା ବା କୌଣସି ତ୍ରୁଟି ପରିଲକ୍ଷିତ ହେଲା ତାର କାରଣ ବିଭାଗୀୟ ମୁଖ୍ୟଙ୍କୁ ଦେବାକୁ କୁହାଗଲା । ସେମାନେ ନିଜ ନିଜ ଦାୟିତ୍ୱ ବୁଝିପାରିଲେ । ଖର୍ଚ୍ଚ ବହୁତ କମିଗଲା । କାରଖାନା ସୁରୁଖୁରୁରେ ଚାଲିଲା । ବିଶ୍ୱେଶ୍ୱରୟା ଭଲକାର୍ଯ୍ୟ ପାଇଁ କର୍ମଚାରୀଙ୍କୁ ପୁରସ୍କୃତ କରୁଥିଲେ । ସେ ତାଙ୍କର ତଳ କର୍ମଚାରୀଙ୍କଠାରୁ ପରାମର୍ଶ ମଧ୍ୟ ଗ୍ରହଣ କରୁଥିଲେ । ତାଙ୍କର ଦେଶଭକ୍ତି, ସମୟାନୁବର୍ତ୍ତିତା, ଆତ୍ମବିଶ୍ୱାସ ଓ କର୍ତ୍ତବ୍ୟ ପରାୟଣତାରେ ଯେକେହି ଲୋକ ଉଦ୍‌ବୁଦ୍ଧ ନ ହୋଇ ରହିପାରିବ ନାହିଁ । ତାଙ୍କର କର୍ମଚାରୀମାନେ ସେଥିରୁ ବାଦ ପଡ଼ନ୍ତେ କିପରି ?

ଯେଉଁ କାରଖାନା ବନ୍ଦହେବାକୁ ବସିଥିଲା, ବିଶ୍ୱେଶ୍ୱରୟାଙ୍କ ବଳିଷ୍ଠ ନେତୃତ୍ୱ ଓ ନିଷ୍ଠା ବଳରେ ପୁଣି ଚାଲୁହୋଇ ପାରିଲା, ବେକାରୀ ଦୂରହେଲା; ତାଙ୍କପରି ଲୋକଙ୍କୁ କିଏ ବା ସମ୍ମାନ ନ ଦେବ ?

ଶ୍ରେଷ୍ଠଲୋକ ଯେପରି ଆଚରଣ କରନ୍ତି ଅନ୍ୟମାନେ ତାକୁ ଅନୁସରଣ କରନ୍ତି । ସାର୍ ବିଶ୍ୱେଶ୍ୱରୟାଙ୍କ ସମୟାନୁବର୍ତ୍ତିତା ଓ କର୍ତ୍ତବ୍ୟ ନିଷ୍ଠା ସମସ୍ତ କର୍ମଚାରୀଙ୍କୁ କାର୍ଯ୍ୟକରିବା ଶକ୍ତିକୁ ଦ୍ୱିଗୁଣିତ କରିଦେଲା । ସେ ଭର୍ତୃହରିଙ୍କ ଆପ୍ତବାକ୍ୟ ମନେପକାଇ କହୁଥିଲେ, "The fool never begins a work for fear of failure; the mediocre gives up in the middle, frustrated by obstruction but the courageous one never gives up, inspite of failures, till the goal is reached."

ଅକୃତ କାର୍ଯ୍ୟ ହେବ ବୋଲି ବୋକାଲୋକଟିଏ କୌଣସି କାର୍ଯ୍ୟ କରେ ନାହିଁ । କେତେକ ମଧ୍ୟମ କିସମର ଲୋକେ ହତୋତ୍ସାହିତ ହୋଇ ଯେ କୌଣସି ସାମାନ୍ୟ ବାଧାବିଘ୍ନରେ କାର୍ଯ୍ୟ ପରିତ୍ୟାଗ କରିଥାନ୍ତି, କିନ୍ତୁ ସାହାସୀ ଲୋକ ଯେତେ ବାଧାବିଘ୍ନ ଆସିଲେ ମଧ୍ୟ ଲକ୍ଷ୍ୟ ସ୍ଥଳରେ ନ ପହଞ୍ଚିବା ଯାଏ, କାର୍ଯ୍ୟ ପରିତ୍ୟାଗ

କରେନାହିଁ । ପ୍ରକୃତରେ ବିଶ୍ୱେଶ୍ୱରୟା ସାହସିକ ପଦକ୍ଷେପ ପାଇଁ ଭଦ୍ରାବତୀ ଲୌହ ଓ ଇସ୍ପାତ କାରଖାନାଟି ପୁନର୍ଜୀବିତ ହୋଇପାରିଲା ।

ଭଦ୍ରାବତୀ ଲୌହ ଓ ଇସ୍ପାତ କାରଖାନାର ଦୁର୍ଭାଗ୍ୟର ଅନ୍ତ ନଥିଲା । ପ୍ରକୃତି ତା ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲା । ମୌସୁମୀ ପ୍ରବାହ ପ୍ରବଳ ହୋଇ ଉଠିଲା, ଭଦ୍ରାନଦୀରେ ପ୍ରଳୟଙ୍କରୀ ବନ୍ୟା ଆସିଲା । ଲୌହଖଣିର ଟନେଲ ବା ସୁଡ଼ଙ୍ଗ ପଥ ବନ୍ୟା ପ୍ଲାବିତ ହେଲା । ବ୍ଲାଷ୍ଟ ଫରନେସ ଅଚଳ ହୋଇ କାରଖାନାର କାର୍ଯ୍ୟ ବାଧାପ୍ରାପ୍ତ ହେଲା । ଯେଉଁମାନେ ପ୍ରଥମେ ଏହି କାରଖାନାର ବିରୋଧ କରୁଥିଲେ, ସେମାନେ ଏପରି ବିପର୍ଯ୍ୟୟ ଦେଖି ମନେ ମନେ ଖୁସି ହେଉଥାନ୍ତି ଏବଂ ବିଶ୍ୱେଶ୍ୱରୟାଙ୍କ ଯୋଜନାର ପରିହାସ କରୁଥାନ୍ତି । ରୁଷ-ବଂଶୋଦ୍ଭବ ଜଣେ ଆମେରିକା ବାସିନ୍ଦା ଡି. ଜି. ଗୁଡ଼କୋଭ ସେଠାରେ ଜେନେରାଲ ସୁପରିନ୍‌ଟେଣ୍ଡେଣ୍ଟ ଥିଲେ । କାରଖାନାର ମରାମତି ଏବଂ ତାର ଅସୁବିଧା ସୁଧାରିବା ପାଇଁ କାରଖାନାକୁ ଛଅମାସ ବନ୍ଦ କରିବାକୁ ସେ ତାଙ୍କର ଦୃଢ଼ମତ ପୋଷଣ କଲେ । ଏପରିକି ମହୀଶୂର ମହାରାଜାଙ୍କୁ ଏହି କାରଖାନାକୁ ବନ୍ଦ କରିବାକୁ ଅନ୍ୟମାନେ ମଧ୍ୟ ପରାମର୍ଶ ଦେଉଥିଲେ । କିନ୍ତୁ ମହୀଶୂର ମହାରାଜା ଏହାର ବିଭିନ୍ନ ଦିଗ ବିଚାର କରି ବିଶ୍ୱେଶ୍ୱରୟାଙ୍କୁ ଆବଶ୍ୟକୀୟ ମରାମତି କରି ପୁନର୍ବାର ଉକ୍ତ କାରଖାନାକୁ ଚାଲୁ କରିବାକୁ ପରାମର୍ଶ ଦେଲେ ।

ସାର୍ ବିଶ୍ୱେଶ୍ୱରୟା ଭଦ୍ରାବତୀର ବନ୍ୟା ଯୋଗୁଁ କାରଖାନାର କି କି କ୍ଷତି ହୋଇଛି ତନ୍ନ ତନ୍ନ କରି ପରୀକ୍ଷା କଲେ । ସେ କାରଖାନାର କ୍ଷତି ପାଇଁ ତାର ଜେନେରାଲ ସୁପରିନ୍‌ଟେଣ୍ଡେଣ୍ଟ ଗୁଡ଼କୋଭଙ୍କୁ ସମ୍ପୂର୍ଣ୍ଣ ଦାୟୀ କଲେ । ସେ କହିଲେ ଠିକ୍ ସମୟରେ ଉଚିତ ପଦକ୍ଷେପ ନିଆଯାଇଥିଲେ ବ୍ଲାଷ୍ଟଫରନେସ ମଧ୍ୟକୁ ବନ୍ୟାଜଳ ପଶିନଥାନ୍ତା । ଏତଦ୍ୱାରା ୨୩୦୦୦ ଟନ ଜାଳେଣୀ ନଷ୍ଟହେଲା । ସେଥିରେ ଅନ୍ତତଃ ୪୮୧୭ ଟନ ଲୌହ ଆମଦାନୀ ହୋଇଥାନ୍ତା । ଏହି ସବୁ କ୍ଷତିର ମୂଲ୍ୟ ପ୍ରାୟ ଏକଲକ୍ଷ ଟଙ୍କା ହେବ । ସେ ଗୁଡ଼କୋଭଙ୍କୁ କର୍ତ୍ତବ୍ୟରେ ଅବହେଳା ପାଇଁ କାରଣ ଦର୍ଶାଅ ନୋଟିସ ଜାରୀ କଲେ । ଏହାର ଏକକିତା ନକଲ ଆମେରିକାର ପେରିନ ଓ ମାର୍ଶାଲଙ୍କୁ ଦେଇ ଗୁଡ଼କୋଭଙ୍କୁ ଫେରାଇ ନେଇଯିବା ପାଇଁ ଅନୁରୋଧ କଲେ ।

ସାର୍ ବିଶ୍ୱେଶ୍ୱରୟା ମହାରାଜାଙ୍କୁ କାରଖାନାର ପରିସ୍ଥିତି ବୁଝାଇ ଦେଲେ । ସେ ତିନିମାସ ମଧ୍ୟରେ କାରଖାନାର ମରାମତି କରିବେ ବୋଲି ଦୃଢ଼ୋକ୍ତି ପ୍ରକାଶ କଲେ । ବିଶ୍ୱେଶ୍ୱରୟା ଗୁଡକୋଭଙ୍କର ଜଣେ ତଳପାହିଆର କର୍ମଚାରୀଙ୍କୁ ସେହି କାର୍ଯ୍ୟ କରିବା ପାଇଁ ଅବସ୍ଥାପିତ କଲେ । କାରଖାନାର କର୍ମଚାରୀମାନେ ଦିନରାତି ପରିଶ୍ରମ କରି ତିନି ମାସରେ ମରାମତି କାର୍ଯ୍ୟ ସମ୍ପୂର୍ଣ୍ଣ କଲେ । ଉତ୍ପାଦନ ପୂର୍ବପରି ଚାଲିଲା ।

ଏଣେ ଗୁଡ଼କୋଭଙ୍କୁ ଜଣେ ଭାରତୀୟ କାରଣ ଦର୍ଶାଅ ନୋଟିସ ଜାରୀକରିବ, ତାହା ତାଙ୍କପରି ଜଣେ ହ୍ୱାଇଟ ସିନ ବା ଗୋରା ସାହେବଙ୍କୁ ବଡ ଅପମାନ ଜନକ ବୋଧ ହେଲା, ତେଣୁ ସେ ରାଗରେ ଜର୍ଜରିତ ହୋଇ ଇସ୍ତଫା ପତ୍ର ଦେଇ ଆମେରିକା ପ୍ରତ୍ୟାବର୍ତନ କଲେ । ତାଙ୍କ ସ୍ଥାନରେ ଏନ୍. ମାଧବରାଓଙ୍କୁ ତୁରନ୍ତ ଅବସ୍ଥାପିତ କରାଗଲା ।

ବିଶ୍ୱେଶ୍ୱରୟାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ତିନିମାସରେ କର୍ମୀମାନେ ମରାମତି କାର୍ଯ୍ୟ ସମ୍ପୂର୍ଣ୍ଣ କରି କାରଖାନାର ଉତ୍ପାଦନ ଉପଯୁକ୍ତ ସ୍ତରକୁ ଆଣିପାରି- ଥିବାରୁ ସେ ତତ୍‌କାଳୀନ ମହୀଶୂରର ଦେଓ୍ୱାନ୍ ଏ. ଆର୍. ବାନାର୍ଜିଙ୍କ ନିକଟକୁ ଏକ ପତ୍ର ଲେଖିଥିଲେ । ସେ ସେଥିରେ ଦର୍ଶାଇଥିଲେ ଦିନକୁ ଟ ୪୫୦୦ଙ୍କା ଖର୍ଚ୍ଚ କରି ଟ ୪୦୫୦ ର ଉତ୍ପାଦନ କରୁଛନ୍ତି । ଯଦି ଆଉ ୪୦ ଟନ ଉତ୍ପାଦନ ବଢ଼ିବ ତା ହେଲେ ଲାଭ କ୍ଷତି ସମାନ ହେବ । ଯଦି ୫୦ ଟନ ହୁଏ ଅଳ୍ପ ଲାଭହେବ କିନ୍ତୁ ଉତ୍ପାଦନ ୭୦ ବା ୮୦ ଟନ ହେଲେ ଯାହିଁ ସନ୍ତୋଷଜନକ ଅବସ୍ଥାକୁ ଆସିଯିବ ।

ଭଦ୍ରାବତୀ ଲୌହ ଓ ଇସ୍ପାତ କାରଖାନାରେ ଶ୍ରମିକ ଓ ସ୍ୱଳ୍ପ ବେତନ ଭୋଗୀ କର୍ମଚାରୀଙ୍କୁ ଛାଡ଼ିଦେଲେ ଅନ୍ୟାନ୍ୟ ଉଚ୍ଚ ଓ ଦାୟିତ୍ୱପୂର୍ଣ୍ଣ ପଦବୀରେ କେବଳ ବିଦେଶୀମାନେ ନିଯୁକ୍ତ ହୋଇ ଥିଲେ । ମ୍ୟାନେଜିଂ ଏଜେଣ୍ଟଙ୍କ ସହିତ ଅନ୍ୟମାନେ ଆମେରିକା ଫେରିଗଲା ପରେ ମଧ୍ୟ ଆଉ ଏଗାରଜଣ ଆମେରିକାନ ବିଶେଷଜ୍ଞ ଥିଲେ । ସେମାନେ ଭାରତୀୟଙ୍କ ତୁଳନାରେ ମୋଟା ଦରମା ପାଉଥିଲେ ମଧ୍ୟ ଉକ୍ତ କାରଖାନାର ସଫଳ ପରିଚାଳନାରେ ସେମାନଙ୍କର ଆଗ୍ରହ ନ ଥିଲା । ସେମାନେ କେବଳ ନିଜର ବ୍ୟକ୍ତିଗତ ଉପାର୍ଜନ ଲାଗି ଆଗ୍ରହୀ ଥିଲେ । ଗୋରା ଲୋକମାନେ ଭାରତୀୟଙ୍କୁ ନ୍ୟୁନ ଦୃଷ୍ଟିରେ ଦେଖୁଥିଲେ । ସେମାନେ ଭାବୁଥିଲେ ଭାରତୀୟମାନେ ଏହି କାରଖାନାର ସଫଳ ପରିଚାଳନା କରିପାରିବେ ନାହିଁ । ବିଶ୍ୱେଶ୍ୱରୟା ସେମାନଙ୍କର ଆଧିପତ୍ୟ ବା ଉଚ୍ଚ ନୀଚ ଦୃଷ୍ଟିକୁ ସହିପାରିଲେ ନାହିଁ । ସେ ଦେଖିଲେ ଏହି ବିଦେଶୀ ବ୍ୟକ୍ତିମାନେ ରହିଲେ ଏହି କାରଖାନାର କୌଣସି ଉନ୍ନତି ହୋଇ ପାରିବ ନାହିଁ । ଭାରତୀୟମାନେ ଯେ ଗୋରା ଲୋକମାନଙ୍କଠାରୁ କୌଣସି ଗୁଣରେ ନ୍ୟୁନ ନୁହନ୍ତି ଏବଂ ବୁଦ୍ଧିମାନ, ଏ ଦୃଢ଼ ବିଶ୍ୱାସ ତାଙ୍କର ଥିଲା । ସେ ସେମାନଙ୍କ ସ୍ଥାନରେ କେବଳ ଭାରତୀୟମାନଙ୍କୁ ନିଯୁକ୍ତ କଲେ ଏବଂ ଭାରତୀୟ ଇଞ୍ଜିନିୟର ଓ ରସାୟନବିତମାନଙ୍କୁ ଆମେରିକାନ ବିଶେଷଜ୍ଞଙ୍କ ସ୍ଥାନରେ ନିଯୁକ୍ତ ଦେଲେ । ତାଙ୍କର ଏହି ପ୍ରକାର ପଦକ୍ଷେପ ଦ୍ୱାରା ତିନିବର୍ଷ ମଧ୍ୟରେ ସେହି କାରଖାନାରେ କୌଣସି ବିଦେଶୀ ଅଫିସର ରହିଲେ ନାହିଁ ଏବଂ ସେମାନଙ୍କ ସ୍ଥାନରେ ମହୀଶୂରବାସୀଙ୍କୁ ନିଯୁକ୍ତି ଦେଇ ସେ ଭଦ୍ରାବତୀ ଲୌହ ଇସ୍ପାତ କାରଖାନାକୁ ସ୍ୱଦେଶୀକରଣ କଲେ । ଏହା ପରାଧୀନ ଭାରତରେ ଏକ ଅଭୂତପୂର୍ବ ଘଟଣା ରୂପେ ବିବେଚିତ ହୋଇଥିଲା ।

ବିଶ୍ୱେଶ୍ୱରୟା ଉତ୍ପାଦନ ଉପରେ ଯୋର ଦେଲେ । ଯେତେବେଳେ ଉତ୍ପାଦନ ଅଧିକ ହୋଇଗଲା ତାଙ୍କୁ ଉତ୍ପାଦିତ ସାମଗ୍ରୀର ବିକ୍ରି ଉପରେ ଧ୍ୟାନ ଦେବାକୁ ପଡ଼ିଲା । କେବଳ ବିକ୍ରି ହୋଇଗଲେ ହେବ ନାହିଁ, ଭଲ ଲଭରଖି ବିକ୍ରି ହେଲେ ଯାଇଁ ଶୁଭଙ୍କର । ସେଥିପାଇଁ ଉଚ୍ଚମାନର ଲୌହ ଉତ୍ପାଦନ ପାଇଁ ଧ୍ୟାନ ଦେଇ ସଫଳ ହେଲେ । କିନ୍ତୁ ଭାରତୀୟ ବଜାରରେ ଉଚ୍ଚ କୋଟୀର ଲୌହର ମୂଲ୍ୟ ମିଳିଲା ନାହିଁ । ୧୯୨୪ ମସିହାରେ ମାନ୍ଦ୍ରାସ, ଅହମଦାବାଦ ଓ କଲିକତା ଠାରେ କେତେକ ବିକ୍ରିକେନ୍ଦ୍ର ପ୍ରତିଷ୍ଠାକଲେ । ୧୯୨୫ ମସିହାରେ ନିଜ ଖର୍ଚ୍ଚରେ ସୁଇଡ଼େନ, ଇଂଲଣ୍ଡ, ଆମେରିକା ଓ ଜର୍ମାନୀ ଦେଶ ପରିଭ୍ରମଣରେ ଯାଇଁ କାଠ କୋଇଲା ଭିତ୍ତିକ ଶିଳ୍ପ ଅନୁଧ୍ୟାନ କରି ଭଦ୍ରାବତୀ ଲୌହ ଏବଂ ଇସ୍ପାତ କାରଖାନାରେ ସେହି ଜ୍ଞାନ ପ୍ରୟୋଗ କରି ସୁଫଳ ପାଇଲେ ।

'ଟାଇମ୍‌ସ ଅଫ ଲଣ୍ଡନ' ପତ୍ରିକାରେ ଭଦ୍ରାବତୀ ଲୌହ ଏବଂ ଇସ୍ପାତର ଏକ ବିଜ୍ଞାପନ ଦେଖି ଆମେରିକା ଓ ଇଂଲଣ୍ଡବାସୀ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେତେବେଳେ ବାର୍ଷିକ ୫୦୦୦ ଟନ ପିଗ୍ ଆଇରନ ଆମେରିକାକୁ ଯୋଗାଇ ଦେବାକୁ ଚୁକ୍ତି କରିଥିଲେ । ଅଧିକ ଚାହିଦା ଥିଲେ ମଧ୍ୟ ଓ୍ୟାସିଙ୍ଗଟନ ଅଧିକ ନେବାକୁ ମନାକଲା କାରଣ ତାଙ୍କ ନିଜ ଦେଶର ଉତ୍ପାଦିତ ଦ୍ରବ୍ୟରେ କ୍ଷତି ହେଲେ ସେଥିପାଇଁ ତାଙ୍କୁ ମୂଲ୍ୟ ଦେବାକୁ ପଡ଼ିପାରେ ।

ବିଶ୍ୱେଶ୍ୱରୟା କେବଳ ଲୌହର ଅଧିକ ବିକ୍ରିରେ ସନ୍ତୁଷ୍ଟ ହେଲେ ନାହିଁ, ମହୀଶୂର ଓ ବାଙ୍ଗାଲୋରର ଜଳଯୋଗାଣ ପ୍ରକଳ୍ପରେ ଆବଶ୍ୟକ ହେଉଥିବା ପାଇପର ଉତ୍ପାଦନ କରିବାକୁ ମନ ବଳାଇଲେ । ପାଇପ ଗୁଡ଼ିକୁ ବିଦେଶରୁ ଆମଦାନୀ କରିବାକୁ ପଡୁଥିଲା । ୧୯୨୫ ମସିହାରେ ଭଦ୍ରାବତୀ ଲୌହ ଏବଂ ଇସ୍ପାତ କାରଖାନାର ଲୁହାକୁ ତରଳେଇ କରି ପାଇପ ନିର୍ମାଣ କରାଗଲା । ଏତଦ୍ୱାରା ବୈଦେଶିକ ମୁଦ୍ରା ଉପାର୍ଜନ ସହ ନିଜ ଦେଶର ପାଇପର ଚାହିଦା ପୂରଣହୋଇ ପାରିଲା ।

ଭଦ୍ରାବତୀ ଲୌହ ଏବଂ ଇସ୍ପାତ କାରଖାନାକୁ ଏକ ରୁଗ୍ଣ ଶିଳ୍ପ ଅବସ୍ଥାରୁ ଏକ ଲଭଜନକ ସଂସ୍ଥାରେ ପରିଣତ କରିଥିବାରୁ ସାର୍ ବିଶ୍ୱେଶ୍ୱରୟା ଭାବିଲେ ଯେ ଏଣିକି ଏ କ୍ଷେତ୍ରରେ ତାଙ୍କ ପାରଦର୍ଶିତାର ପ୍ରୟୋଜନୀୟତା ନଥିଲା, ତେଣୁ ସେ ତାଙ୍କର ଇସ୍ତଫା ଗ୍ରହଣ କରିବାକୁ ମହୀଶୂର ମହାରାଜାଙ୍କୁ ଅନୁରୋଧ କଲେ । ମହାରାଜା ପ୍ରଥମେ ରାଜି ନ ଥିଲେ କିନ୍ତୁ ପରେ ତାଙ୍କ ଅନୁରୋଧ ରକ୍ଷା କଲେ । ବିଶ୍ୱେଶ୍ୱରୟା ତାଙ୍କର ଚେୟାରମ୍ୟାନ ପଦରୁ ତ୍ୟାଗପତ୍ର ଦେଇଦେଲେ । ଲୌହକାରଖାନା ପାଇଁ ଯାହା ତାଙ୍କର ପ୍ରାପ୍ୟ ବା ଅନରାରିୟମ ଥିଲା, ତାହା ସେ ଗ୍ରହଣ କଲେ ନାହିଁ । ତାଙ୍କର ତତ୍‌କାଳୀନ ଅବସ୍ଥାରେ ଟ ୧,୩୦,୦୦୦ଙ୍କା ପ୍ରାପ୍ୟ ହେଉଥିଲା ।

ସେ କହିଲେ ଯେ ତାଙ୍କର ଧନ ସଞ୍ଚୟ କରିବାର ବୟସ ଅତିକ୍ରାନ୍ତ ହୋଇଗଲଣି, ତେଣୁ ସେ ଏହି ଅର୍ଥକୁ ବାଙ୍ଗାଲେରର ସାର୍ ଜୟଚ୍ଚାମରାଜେନ୍ଦ୍ର ଅକୁପେସନାଲ ଇନଷ୍ଟିଚିଉଟ ପ୍ରତିଷ୍ଠା କରିବାକୁ ଦେଇଦେଲେ । ସେ ଇନିଷ୍ଟିଚିଉଟ୍ ପ୍ରତିଷ୍ଠା କରିବାକୁ ତାର ସମସ୍ତ ଯୋଜନା ନିଜେ ପ୍ରସ୍ତୁତ କରିଥିଲେ । ଯେତେବେଳେ ପ୍ରସ୍ତାବ ଦେଲେ ସାର ବିଶ୍ୱେଶ୍ୱରୟାଙ୍କ ନାମରେ ସେ ଅନୁଷ୍ଠାନର ନାମକରଣ ହେବ ସେ ମନାକରି ମହୀଶୂରର ତତ୍କାଳୀନ ଶାସକ ଶ୍ରୀ ଜୟଚ୍ଚାମରାଜେନ୍ଦ୍ର ଓ୍ୟାଡ଼େୟାରଙ୍କ ନାମରେ ହେବା ପାଇଁ ପ୍ରସ୍ତାବ ଦେଲେ । ଏହି ଅନୁଷ୍ଠାନ ଶହ ଶହ ଶିକ୍ଷିତ ଯୁବକଙ୍କୁ ତାଲିମ ଦେଇ ତାଙ୍କର ଜୀବିକା ନିର୍ବାହ କରିବାରେ ସାହାଯ୍ୟ କଲା ।

ମହାରଜା ସାର୍ ବିଶ୍ୱେଶ୍ୱରୟାଙ୍କ ବିଦାୟ ସମୟରେ କେତେ ପଦ ପ୍ରଶଂସା କରି ଲେଖିଥିଲେ, "You have given your time and talent for the development of the works for the last six and half years. I can assure you that the good work you have done in this direction can never more be appreciated by any one than by myself."

ବିଗତ ସାଢେ ଛଅବର୍ଷ କାଳ ଏହି କାରଖାନାର ଉନ୍ନତି ପାଇଁ ସମୟ ଏବଂ ଧୀଶକ୍ତି ଖଟେଇ ଯେଉଁ ଉତ୍ତମ କାର୍ଯ୍ୟ କରିଛନ୍ତି ତାର ପ୍ରଶଂସା ମୋ ବ୍ୟତୀତ ଆଉ ଅଧିକ କେହି କରିପାରିବେନାହିଁ ।

ନିଉୟର୍କରୁ ବିଶ୍ୱେଶ୍ୱରୟାଙ୍କ ଇସ୍ତଫା ଦେବା ଜାଣିଲ ପରେ ପେରିନ ଲେଖିଲେ, "I can not tell you how sorry I am to learn that you have retired from the Board of Management of Mysore Government Iron works. You speak of the works having benefitted by our personal interests. I feel that it would not have existed except for you. As to yourself, I would like to say that in my broad experience. I have rarely met a man for whom I had a deeper respect not only for his moral character and his ideals and earnest patriotism but also engineering ability."

"ଲୌହ କାରଖାନାର ବୋର୍ଡ଼ ଅଫ୍ ମ୍ୟାନେଜମେଣ୍ଟରୁ ଆପଣଙ୍କର ଇସ୍ତଫା କଥା ଶୁଣି ମୁଁ ମର୍ମାହତ । ଆପଣ କହିଥିଲେ ନା ଏହି କାରଖାନାଟି ଆମର ବ୍ୟକ୍ତିଗତ ସ୍ୱାର୍ଥ ପାଇଁ କିନ୍ତୁ ମୁଁ ଅନୁଭବ କରେ ଯେ ଆପଣ ନ ଥିଲେ ଏହାର ସତ୍ତା ନ ଥାନ୍ତା ।

ମୋ ଜାଣିବାରେ କ୍ୱଚିତ୍ ଆପଣଙ୍କ ପରି ଏକ ବିରଳ ବ୍ୟକ୍ତିତ୍ୱ ଦେଖିଛି ଯାହାକୁ କି ମୋ ହୃଦୟ ଭିତରୁ ଗଭୀର ସମ୍ମାନ ଢ଼ାଳି ଦେଇଛି କେବଳ ଆପଣଙ୍କ ପରି ଜଣେ ସଚ୍ଚରିତ୍ର, ଦେଶଭକ୍ତ ଓ ଆଦର୍ଶ ପୁରୁଷ ପାଇଁ ନୁହେଁ ବରଂ ଆପଣଙ୍କ ଇଞ୍ଜିନିୟରିଂ ସାମର୍ଥ୍ୟ ପାଇଁ ।"

ଲୌହ କାରଖାନା ୧୯୧୮ ମସିହାରେ କାଠ କୋଇଲା ବ୍ୟବହୃତ ହୋଇ କ୍ଷୁଦ୍ର ଶିଳ୍ପ ରୂପେ ତାର ନାମ ମହୀଶୂର ଡ଼ିଷ୍ଟିଲେସନ ଆଣ୍ଡ ଆଇରନ ଓ୍ୱାର୍କସ୍ ନାମରେ ପ୍ରତିଷ୍ଠା ହୋଇଥିଲେ ମଧ୍ୟ ତାର ଲୋକପ୍ରିୟ ନାମ 'ଭଦ୍ରାବତୀ ଆଇରନ ଆଣ୍ଡ ଷ୍ଟିଲ ଓ୍ୱାର୍କସ୍' ଥିଲା । ପରେ ତାର ନାମ 'ମହୀଶୂର ଆଇରନ ଆଣ୍ଡ ଷ୍ଟିଲ ଓ୍ୱାର୍କସ୍' ହେଲା । ୧୯୪୨ ମସିହାରେ ମିକ୍ସଡ ଆଲୟ ନିର୍ମାଣ କରି ଏସିଆରେ ବୃହତ୍ତମ ହୋଇ ପାରିଲା । ୧୯୫୨ ମସିହାରେ ବିଦ୍ୟୁତ୍ ଫରନେସରେ ଲୁହା ତରଳା ଗଲା । ୧୯୬୩ ମସିହାରେ ଏହାର ସ୍ୱର୍ଣ୍ଣ ଜୟନ୍ତି ପାଳିତ ହେଲା । ଖ୍ରୀ ୧୯୭୫ରେ ଏହି କାରଖାନା ବିଶ୍ୱେଶ୍ୱରୟାଙ୍କ ନାମରେ ନାମିତ ହୋଇ 'ବିଶ୍ୱେଶ୍ୱରୟା ଆଇରନ ଆଣ୍ଡ ଷ୍ଟିଲ ଓ୍ୱାର୍କସ୍" ରଖାଗଲା । ଦେଶର ନିର୍ମାଣ କ୍ଷେତ୍ରରେ ଏହି ଲୌହ କାରଖାନାଟି ଦେଶପ୍ରତି ଏକ ମହତ ଦାନ ।



ଚତୁର୍ଦ୍ଦଶ ପରିଚ୍ଛେଦ :

# ମୋଟରଗାଡ଼ି ଓ ଜାହାଜ ନିର୍ମାଣ ଶିଳ୍ପ

ଭାରତରେ ଶିଳ୍ପର ଉନ୍ନତି ଏତେ ପଛରେ ପଡ଼ିଥିଲା ଯେ ଛୋଟ ଛୋଟ ଆବଶ୍ୟକୀୟ ସାମଗ୍ରୀ ଦିଆସିଲି, ଛୁଞ୍ଚି, ଆଲପିନ ମଧ୍ୟ ସେତେବେଳେ ବିଦେଶରୁ ଆମଦାନୀ ହେଉଥିଲା, ତଥାପି ବିଶ୍ୱେଶ୍ୱରାୟା ରେଳଇଞ୍ଜିନ, ମୋଟରଗାଡ଼ି, ଉଡ଼ାଜାହାଜ ପ୍ରଭୃତିର ଉତ୍ପାଦନ ଆମ ଦେଶରେ କିପରି ହୋଇପାରିବ ତାର ସ୍ୱପ୍ନ ଦେଖୁଥିଲେ । ସେଥିପାଇଁ ସେ ଛଅଥର ବିଦେଶ ଗସ୍ତରେ ଯାଇଥିଲେ । ୧୯୩୫ ମସିହାରେ ସୁଇଡ଼େନ, ଇଉରୋପ, ଇଂଲଣ୍ଡ, ଆମେରିକା ଓ କାନାଡ଼ାର ବିଭିନ୍ନ ମୋଟରଗାଡ଼ି କାରଖାନା ପରିଦର୍ଶନ କରିଥିଲେ । ତାଙ୍କର ଏକ ଉଚ୍ଚ ଅଭିଳାଷ ଥିଲା— ଭାରତରେ ଜାହାଜ ଓ ମୋଟରଗାଡ଼ି ନିର୍ମାଣ କିପରି ହେବ, ସେ ଅକ୍‌ସଫୋର୍ଡଠାରେ ମରିସ୍ ମୋଟର କାରଖାନା ପରିଦର୍ଶନ ପରେ ବର୍ମିଂହାମଠାରେ ଅଷ୍ଟିନ୍ ମୋଟର କମ୍ପାନୀ, ଡ଼ଗେନ ହାମରର ଫୋର୍ଡ ମୋଟର ଓ୍ୱାର୍କସ, ଭକ୍‌ସଲ୍ ମୋଟରସ ଲିମିଟେଡ଼ ଓ ଅନ୍ୟ କେତେକ ମୋଟରଗାଡ଼ି ନିର୍ମାଣ କାରଖାନା ପରିଦର୍ଶନ କରିଥିଲେ ।

ଗୋଟିଏ ଦେଶର ସଭ୍ୟତା କିପରି ଅଗ୍ରଗତି କରୁଛି ତାହା ସେ ଦେଶର ମୋଟରଗାଡ଼ିର ବ୍ୟବହାର ତଥା ପେଟ୍ରୋଲ ଓ ବିଦ୍ୟୁତର କେତେ ପରିମାଣରେ ବ୍ୟୟ ହେଉଛି ତା ଉପରେ ନିର୍ଭର କରେ । ସେତେବେଳେ ଭାରତ କୋଟି କୋଟି ଟଙ୍କା ମୂଲ୍ୟରେ ଏହିସବୁ ପଦାର୍ଥ ବିଦେଶରୁ ଆମଦାନୀ କରୁଥିଲା । ସେ ଇଉରୋପର ଫିଆଟ, ଲନ୍‌ସିଆ ଓ ସ୍କା ଏବଂ ଇଟାଲିଠାରେ ଥିବା ମୋଟର ନିର୍ମାଣ ଫ୍ୟାକ୍‌ଟୋରୀ ପରିଦର୍ଶନ କରିଥିଲେ । ସେ ମଧ୍ୟ ପ୍ରେଗ୍‌ଠାରେ ଥିବା ସ୍କୋଡ଼ା ଓ୍ୱାର୍କସ୍ ଏବଂ ବର୍ଲିନଠାରେ ଥିବା କେତେକ ମୋଟରଗାଡ଼ି କାରଖାନା ମଧ୍ୟ ପରିଦର୍ଶନ କରିଥିଲେ ।

ବିଶ୍ୱେଶ୍ୱରାୟା ବର୍ମିଂହାମଠାରେ ଲର୍ଡ଼ ଅଷ୍ଟିନଙ୍କୁ ଭେଟିଥିଲେ । ସେ ତାଙ୍କୁ ଆମେରିକାର ମଧ୍ୟମ ଧରଣର କାର ଭାରତର ଜଳବାୟୁ ଓ ରାସ୍ତାଘାଟର ଅବସ୍ଥା ପାଇଁ ବିଶେଷ ଉପଯୋଗୀ ହୋଇପାରିବ ବୋଲି କହିଥିଲେ । ଅଷ୍ଟିନ ଗାଡ଼ି ଭାରତ ପାଇଁ ଏକ କ୍ଷୁଦ୍ରକାର ହେଲେ ମଧ୍ୟ ବିଶେଷ ସହାୟକ ହେବ । ସେ ଇଟାଲି, ଜର୍ମାନ ଓ ଫ୍ରାନ୍‌ସ ପ୍ରଭୃତି ଦେଶର ମୋଟର ନିର୍ମାଣ ଶିଳ୍ପ ଦେଖିଥିଲେ । ତୁରିନଠାରେ ଫିଆଟ କାରର ନିର୍ମାଣ କାରଖାନା ବାରମ୍ବାର ବୁଲି ଦେଖିଥିଲେ । ଏହାର ପ୍ଲାନ ଏକ ସ୍ୱତନ୍ତ୍ର ଧରଣର । ଏହା ବହୁତଳ ପ୍ରାସାଦ ପରି ହେଲେ ମଧ୍ୟ ଏହାର ଯନ୍ତ୍ରାଂଶଗୁଡ଼ିକୁ ଟ୍ରକ ଯୋଗେ ଘୂର୍ଣ୍ଣାୟମାନ ପଥରେ ଭୂମିର ସବା ଉପର ମହଲକୁ ନିଆଯାଇ ପାରୁଥିଲା ।

ଏହି ସିଡ଼ିର ଉଭୟ ପାର୍ଶ୍ୱରେ ଇଞ୍ଜିନ ଓ ଅନ୍ୟାନ୍ୟ ଯନ୍ତ୍ରାଂଶର ସଂଯୋଗୀକରଣ ପ୍ରକ୍ରିୟା ଅବିରତ ଚାଲିଥାଏ ।

ଲଣ୍ଡନର ଏକ ଦୈନିକ ସମ୍ବାଦପତ୍ର "ଦି ପିପୁଲ"ରେ ସାର୍ ବିଶ୍ୱେଶ୍ୱରୟାଙ୍କର ଏକ ସାକ୍ଷାତକାର ପ୍ରକାଶିତ ହୋଇଥିଲା । ସେଥିରେ ତାଙ୍କୁ ଦେଶର ଜଣେ ସର୍ବୋତ୍କୃଷ୍ଟ ନଦୀବନ୍ଧ ନିର୍ମାଣକାରୀ ଇଞ୍ଜିନିୟର ରୂପେ ବର୍ଣ୍ଣନା କରଯାଇଥିଲା । ସେ ଭବିଷ୍ୟତରେ ଦେଶର ନିର୍ମାଣ କୌଶଳ ପାଇଁ ଭାରତର ହେନେରୀ ଫୋର୍ଡ ରୂପେ ପରିଚିତ ହେବେ । ସେ ଲଣ୍ଡନରୁ ଆମେରିକା ଯାଇଁ ଫୋର୍ଡ ଫ୍ୟାକ୍ଟୋରିର ଜେନେରାଲ ମ୍ୟାନେଜର ଚାର୍ଲସ୍. ଇ. ସୋରେନସେନଙ୍କୁ ସାକ୍ଷାତ କରି ତାଙ୍କଠାରୁ ନିର୍ମାଣ ବିଷୟରେ ବିଶେଷ ସୂଚନା ସଂଗ୍ରହ କରିଥିଲେ । ସେ ଏକ "ପ୍ରପୋଜାଲ ଫର ଆନ ଅଟୋମୋବାଇଲ ଫ୍ୟାକ୍ଟୋରୀ ଇନ ଇଣ୍ଡିଆ" ନାମକ ଏକ ପୁସ୍ତକ ୧୯୩୬ ମସିହାରେ ପ୍ରକାଶ କରିଥିଲେ । ସେଥିରେ ସେ ୧୦,୦୦୦ କାର ଓ ୫,୦୦୦ ଟ୍ରକର ନିର୍ମାଣ ପାଇଁ ଏକ ସ୍କିମ୍ କରିଥିଲେ । ଇଂଲଣ୍ଡ କିମ୍ବା ଆମେରିକାର ସହଯୋଗୀତାରେ ଏହା ହୋଇପାରିବ ବୋଲି ଦର୍ଶାଯାଇଥିଲା । ଫ୍ୟାକ୍ଟୋରୀ ଗୃହ ନିର୍ମାଣ, ମେସିନ ଓ ଅନ୍ୟାନ୍ୟ ଉପକରଣ ବାବଦରେ ନବେଲକ୍ଷ ଏବଂ ନିର୍ମାଣ କାର୍ଯ୍ୟ ପାଇଁ ମୂଳଧନ ୬୦ ଲକ୍ଷ ଏହିପରି ମୋଟ ୧୫୦ ଲକ୍ଷ ଟଙ୍କାର ଅଟକଳ ହୋଇଥିଲା । ପ୍ରଥମରୁ କାର ପ୍ରତି ଉତ୍ପାଦନ ଖର୍ଚ୍ଚ ଟ୧୪୨୦ଙ୍କା ହେବ କିନ୍ତୁ ପରେ ଏହା ଧୀରେ ଧୀରେ କମି ପାଞ୍ଚବର୍ଷ ମଧ୍ୟରେ ଟ୧୨୦୦ଙ୍କାରେ ପହଁଞ୍ଚିବ । ଏହିପରି ଏକା ଧରଣର କାର ଯଦି ଆମେରିକାରୁ ଅଣାଯାଏ ତାର ମୂଲ୍ୟ ଏଠାରେ ପ୍ରାୟ ଟ୩୭୦୦ଙ୍କା ହେବ । ଉକ୍ତ ପୁସ୍ତକରେ ଆହୁରି ଅନେକ ବିଷୟରେ ବିଶେଷ ଉପଯୋଗୀ ତଥ୍ୟମାନ ଦିଆଯାଇଛି । ସେଥିମଧ୍ୟରୁ ଭାରତୀୟ ରାସ୍ତାଘାଟରେ ଚାଲିପାରିବା ଭଳି କିପ୍ରକାର ମଟର ଗାଡ଼ି ନିର୍ମାଣ ହୋଇପାରିବ ସେ ବିଷୟରେ ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚନା ହୋଇଛି । ପୃଥିବୀରେ କେତେ ପ୍ରକାର ମଟରଗାଡ଼ି ଅଛି ସେଥିମଧ୍ୟରୁ ଭାରତ ଓ ବର୍ମାକୁ କେତେ ଗାଡ଼ି ରପ୍ତାନୀ ହୋଇ ଆସୁଛି ତାର ସମସ୍ତ ବିବରଣୀ ଏହି ପୁସ୍ତକରେ ସନ୍ନିବେଶିତ ହୋଇଛି ।

ସାର୍ ବିଶ୍ୱେଶ୍ୱରୟା ଏକ ମୋଟରଗାଡ଼ି ଫାକ୍ଟରୀ ଆରମ୍ଭ କରିବା ପାଇଁ ଭାରତ ସରକାରଙ୍କଠାରେ ଲାଇସେନ୍ସ ନିମନ୍ତେ ଆବେଦନ କଲେ । ବ୍ରିଟିଶ ସରକାର ଭାରତରେ କୌଣସି ଶିଳ୍ପ କରିବାକୁ ଆଗ୍ରହୀ ନଥିଲେ କାରଣ ବ୍ରିଟିଶ ସରକାରଙ୍କର ଫାକ୍ଟୋରୀଗୁଡ଼ିକ ପାଇଁ ଭାରତହିଁ ପ୍ରକୃଷ୍ଟ ବଜାର ଥିଲା । ଭାରତରେ ଯେ କୌଣସି ଶିଳ୍ପ ପ୍ରତିଷ୍ଠା କରିବା ଅର୍ଥ ବ୍ରିଟେନ୍‌ରେ ଥିବା ଶିଳ୍ପ ସମୂହର କ୍ଷତି ଘଟାଇବା । ବ୍ରିଟିଶ ସରକାର ଯୁଦ୍ଧର ଆଳ ଦେଖାଇ ଲାଇସେନ୍ସ ପ୍ରଦାନ କଲେ ନାହିଁ । ଯେତେବେଳେ ବମ୍ବେରେ କଂଗ୍ରେସ ସରକାର ପ୍ରତିଷ୍ଠା ହେଲା ସେତେବେଳେ ଓ୍ୱାଲଚାନ୍ଦ ହୀରାଚାନ୍ଦଙ୍କୁ ଲାଇସେନ୍ସ ମିଳିଲା ।

ୱ୍ୟାଲଚାନ୍ଦ ହୀରାଚାନ୍ଦ ଓ ଶିଳ୍ପ ନିର୍ଦ୍ଦେଶକ ପି. ବି. ଆଡ୍‌ଭାନି ଆମେରିକାରେ ବିଭିନ୍ନ ପ୍ରଖ୍ୟାତ ଅଟୋମୋବାଇଲ ଶିଳ୍ପପତିଙ୍କ ସଙ୍ଗେ ସାକ୍ଷାତ କଲେ । ଫୋର୍ଡ କମ୍ପାନୀ ତାର ସେୟାର ବା ଅଂଶ ୫୧ ପ୍ରତିଶତ ନହେଲେ ସେ କୌଣସି ଏଗ୍ରିମେଣ୍ଟ ବା ଚୁକ୍ତି କରିବାକୁ ମନା କରିଦେଲ, କାରଣ ତା ନହେଲେ କମ୍ପାନୀରେ ତାର ପ୍ରାଧାନ୍ୟ ରହିବ ନାହିଁ । ଆଡ୍‌ଭାନି ଶେଷରେ କ୍ରିସଲର କରପୋରେସନ ଅଫ ଡ୍ରେଟ୍ରଏଟ ସଙ୍ଗେ କଥାବାର୍ତ୍ତା କଲେ । ୧୯୪୦ ମସିହାରେ ଏହି କମ୍ପାନୀ ବୈଷୟିକ ଜ୍ଞାନ କୌଶଳ ଓ କିପରି ଏହା କାର୍ଯ୍ୟକାରୀ ହୋଇପାରିବ ତାର ସହାୟତା ରୟାଲିଟି ଆକାରରେ ଯୋଗାଇ ଦେବା ପାଇଁ ରାଜିହେଲେ । ତତ୍‌କାଳୀନ ଭାରତ ସରକାର ଏହାର ଘୋର ବିରୋଧ କଲେ । ବିଶ୍ୱେଶ୍ୱରାୟା ଯୁକ୍ତି କଲେ ବର୍ତ୍ତମାନର ଆମଦାନୀ ଶୁଳ୍କ ଆଉ ୧୦ ବର୍ଷ ପର୍ଯ୍ୟନ୍ତ ଅଧିକ ଲାଗୁ କରଯାଉ । କିନ୍ତୁ ବମ୍ବେ ସରକାରଙ୍କ ପାଇଁ ଯେଉଁ ଯନ୍ତ୍ରାଂଶ ଓ ମେସିନ ବାହାରୁ ଆସିବ ତା ଉପରେ ଟିକସ ଛାଡ଼ କରଯାଉ । ସେତେବେଳେ ଫ୍ରାନସ୍ ଓ ଜର୍ମାନୀରେ ମଧ୍ୟ ଆମଦାନୀ ଶୁଳ୍କ ୧୦୦ ପ୍ରତିଶତ ଲାଗୁ ହେଉଥିଲା । କିନ୍ତୁ ଭାରତ ସରକାର ଏଥିରେ ରାଜି ହେଲେନାହିଁ । ମହୀଶୂର ରାଜ୍ୟରେ ଏହି କାରଖାନା ନିର୍ମାଣ ପାଇଁ ତତ୍‌କାଳୀନ ଦେଓ୍ୱାନ ସାର୍ ମିର୍ଜା. ଏମ୍. ଇସମାଇଲ ଉଦ୍ୟମ କରିଥିଲେ ମଧ୍ୟ ବ୍ରିଟିଶ ସରକାର ତାଙ୍କ ମହୀଶୂରରେ ଥିବା ରେସିଡ଼େଣ୍ଟଙ୍କୁ ନିର୍ଦ୍ଦେଶ ଦେଲେ ଦେଓ୍ୱାନଙ୍କୁ ନାସ୍ତିବାଣୀ ଶୁଣାଇବାକୁ । ସେଥିରେ କ୍ଷୁବ୍ଧ ହୋଇ ବିଶ୍ୱେଶ୍ୱରାୟା ଏକ ପୁସ୍ତିକା ପ୍ରକାଶ କଲେ—ତାର ନାମ ରଖିଥିଲେ Government of India's obstructive attitude to Indian Automobile Factory Scheme" । ମୋଟରଗାଡ଼ି ଶିଳ୍ପ ପାଇଁ ବିଶ୍ୱେଶ୍ୱରାୟାଙ୍କର ୧୯୦୮ ମସିହାରୁ ଆରମ୍ଭ ହୋଇଥିବା ପ୍ରବଳ ପ୍ରଚେଷ୍ଟା ରୂପାୟିତ ହେବାକୁ ଭାରତକୁ ଦୀର୍ଘ ୪୦ ବର୍ଷ ଅପେକ୍ଷା କରିବାକୁ ପଡ଼ିଥିଲା । ପ୍ରିମିୟର ଅଟୋମୋବାଇଲ କମ୍ପାନୀ କ୍ରିସଲର କମ୍ପାନୀଙ୍କ ସହାୟତାରେ ମୋଟର କାରର ଉତ୍ପାଦନ ଆରମ୍ଭ କରିଥିଲେ ।

ଦେଶରେ ଉଡ଼ାଜାହାଜ ନିର୍ମାଣ ପାଇଁ ଆବଶ୍ୟକତା ପଡ଼ିଲା ବେଳେ ମୋଟର ଗାଡ଼ି ମଧ୍ୟ ନିର୍ମିତ ହୋଇ ପାରୁନଥିଲା । ବିଶ୍ୱେଶ୍ୱରାୟା ଚାହୁଁଥିଲେ ଦେଶରେ ପ୍ରଥମେ ମୋଟରଗାଡ଼ି ନିର୍ମାଣ ହୋଇ ପାରିଲେ ଆମ ଦେଶର ଲୋକମାନେ ପ୍ରଥମେ କିଛି ନିର୍ମାଣ କୌଶଳ ଓ ଅଭିଜ୍ଞତା ହାସଲ କରିବେ । ସେହି ଜ୍ଞାନ କୌଶଳ ପ୍ରୟୋଗ କରି ଉଡ଼ାଜାହାଜ ମଧ୍ୟ ନିର୍ମାଣ କରିପାରିବେ । ବ୍ରିଟିଶ ସରକାର ପ୍ରଥମେ ଏକ ଜାହାଜ କାରଖାନା ନିର୍ମାଣ କରିବାକୁ ବିଶାଖାପାଟଣାକୁ ନିର୍ବାଚନ କଲେ । ଶିଳ୍ପପତି ୱ୍ୟାଲଚାନ୍ଦ ହୀରାଚାନ୍ଦଙ୍କର ସହାୟତା ନିଆଗଲା । ଏହା ଏକ ନୌବାହିନୀ କେନ୍ଦ୍ରରୂପେ ପରିଗଣିତ ହେବ । ସେଥିପାଇଁ ଅନେକ ଇଞ୍ଜିନିୟରଙ୍କୁ ବନ୍ଦର ଉନ୍ନୟନ ପାଇଁ ପଠାଗଲା । କିନ୍ତୁ ଏହା ଏକ ଗଭୀରତମ ସମୁଦ୍ର ହୋଇଥିବାରୁ ଏଠାରେ ସାମୁଦ୍ରିକ ସ୍ରୋତକୁ ସ୍ଥିର ରଖି କାନ୍ଥ ବସାଇବା କଷ୍ଟକର ବ୍ୟାପାର ହେଲା । ବିଶ୍ୱେଶ୍ୱରାୟାଙ୍କ

ପରାମର୍ଶ ନିଆଗଲା—ସେ ଗୁରେଟି 'S'ରେ ଏହାର ସମାଧାନ କରିଦେଲେ । ସେ କହିଲେ, "Sink six ships in sea" ladden with cement. ଛଅଗୋଟି ଜାହାଜ ସିମେଣ୍ଟ ବୋଝାଇକରି ସମୁଦ୍ରରେ ବୁଡ଼ାଇ ଦେଲେ ବନ୍ଦରଟି ନିର୍ମିତ ହୋଇ ପାରିବ । ତାହାହିଁ ହେଲା ।

ଓ୍ୟାଲଗ୍ରାନ୍ଦ ହାରଗ୍ରାନ୍ଦ କମ୍ପାନୀର ଇଞ୍ଜିନିୟର ଏମ୍. ଏଚ୍. ସାହା ବିଶାଖାପାଟଣା ବନ୍ଦରର ପ୍ଲାନ ଧରି ଆସିଥିଲେ ଏବଂ ସେ ବମ୍ବେଠାରେ ଉଡ଼ାଜାହାଜ ନିର୍ମାଣ କରିବାକୁ ସ୍ଥିର କରିଥିଲେ । ସାର୍ ବିଶ୍ୱେଶ୍ୱରୟା ଏବଂ ମୀର୍ଜା ଇସମାଇଲ (ତତ୍‌କାଳୀନ ମହୀଶୂର ଦେଓ୍ୱାନ) ତାଙ୍କୁ ବୁଝାଇ ଦେଲେ ଯେ ବମ୍ବେ ସମୁଦ୍ର ଉପକୂଳରେ ଥିବାରୁ ନୌ ଓ ଆକାଶ ମାର୍ଗରୁ ଶତ୍ରୁପକ୍ଷ ଆକ୍ରମଣ କରିବା ସହଜ କିନ୍ତୁ ବାଙ୍ଗାଲୋରରେ ନିର୍ମିତ ହେଲେ, ଏହା ଅତି ଉତ୍ତମ । ତେଣୁ ମହୀଶୂରରେ ହିନ୍ଦୁସ୍ଥାନ ଏୟାରକ୍ରାଫ୍‌ଟ ଫ୍ୟାକ୍ଟୋରୀ ଆରମ୍ଭ ହେଲା । ଭଦ୍ରାବତୀଠାରୁ କେତେକ ଲୌହ ସାମଗ୍ରୀ ଯୋଗାଇ ଦିଆଗଲା । ଏହି ଶିଳ୍ପରୁ ଅନେକଗୁଡ଼ିଏ କ୍ଷୁଦ୍ର ଆନୁସଙ୍ଗିକ ଶିଳ୍ପସଂସ୍ଥା ଗଢ଼ି ଉଠିଲା ।

ଉଡ଼ାଜାହାଜରେ ଡ଼ାକସେବା ଓ ଯୁଦ୍ଧ ସାମଗ୍ରୀ ନେବା ଆଣିବାରେ ବିଶେଷ ସୁବିଧା ଉପଲବ୍ଧ ହେଲା । ସାଧାରଣ ପରିବହନ ଓ ଗମନାଗମନର ସୁବିଧା ପାଇଁ ରାଜପଥର ବ୍ୟବସ୍ଥା କରାଗଲା, କିନ୍ତୁ ଦୂରଦୂରାନ୍ତକୁ ଗମନାଗମନ ଓ ମାଲ ପରିବହନ ପାଇଁ ରେଳପଥର ଉନ୍ନତି ନିତାନ୍ତ ଜରୁରୀ ହୋଇ ପଡ଼ିଲା । ବିଶ୍ୱେଶ୍ୱରୟା ମହୀଶୂର ରାଜ୍ୟର ଦେଓ୍ୱାନ୍ ରୂପେ ଯୋଗଦେବା ସମୟରେ ରେଳପଥର ସମସ୍ତ ଦାୟିତ୍ୱ ମାନ୍ଦ୍ରାଜ ଓ ଦକ୍ଷିଣାଞ୍ଚଳ ମରଠା ରେଳବାଇର ଦାୟିତ୍ୱରେ ଥିଲା । ଏହାର ପରିଚାଳନା ବ୍ରିଟିଶ କମ୍ପାନୀ କରୁଥିଲେ । ଏହାର ସମସ୍ତ ସେୟାର ହୋଲଡ଼ର (ଅଂଶୀଦାର) ବ୍ରିଟେନର । ଏହାର ଡ଼ିଭିଡେଣ୍ଡଗୁଡ଼ିକ ଲଣ୍ଡନରେ ସମସ୍ତ ଅଂଶୀଦାରମାନଙ୍କୁ ବଣ୍ଟାଯାଉଥିଲା । ବିଶ୍ୱେଶ୍ୱରୟା କହୁଥିଲେ ଏହାର ସମସ୍ତ ପରିଚାଳନା ଭାରତୀୟମାନଙ୍କୁ ମିଳିବା ଉଚିତ । ଏହା କେବଳ ସୈନ୍ୟମାନଙ୍କୁ ନେବା ଆଣିବା କରିବା ବ୍ୟତୀତ ସାଧାରଣ ନାଗରିକମାନେ କିପରି ଯାତାୟତ୍ କରିପାରିବେ ତାର ସୁବିଧା ମିଳିବା ଉଚିତ । ୧୯୧୧ ମସିହାରେ ୪୧୧ ମାଇଲ୍ (୬୮୦.୮ କିଲୋମିଟର) ରେଳପଥ ଯାତାୟତ ଉପଯୋଗୀ ହୋଇଥିଲା ।

୧୯୧୧ ମସିହାରେ ବିଶ୍ୱେଶ୍ୱରୟା ଭାରତୀୟ ଲୋକମାନଙ୍କ ଦ୍ୱାରା ରେଳପଥର ସୁପରିଚାଳନା ପାଇଁ ରେଳକମ୍ପାନୀ ସଙ୍ଗେ ଏକ ୨୫ ବର୍ଷିଆ ଚୁକ୍ତି କରିବାକୁ ଚାହିଁଲେ । ୨୫ ବର୍ଷ ପରେ ରେଳବାଇର ପରିଚାଳନା ଯେପରି ଅଭିଜ୍ଞ ଭାରତୀୟମାନେ କରିପାରିବେ ସେଥିପ୍ରତି ସେ ଯତ୍ନ ନେଉଥିଲେ । ତେବେ ୧୯୧୪ ମସିହାରେ ଭାରତ ସରକାର ଏହି ପ୍ରକଳ୍ପକୁ ଅନୁମୋଦନ ଦେଲେ । ୨୪୯ ମାଇଲ ଲମ୍ବ ରେଳପଥ ନିର୍ମିତ ହୋଇଥିଲା । ମହୀଶୂର ରେଳବାଇର ପରିଚାଳନା ଅଧୀନକୁ ବିରୁର-ସିମୋଗା, ମହୀଶୂର-ନାଞ୍ଜନଗୁଡ୍ ଏବଂ ବାଙ୍ଗାଲୋର-ମହୀଶୂର ଲାଇନ ଆସିଥିଲା ।

—*—

ପଞ୍ଚଦଶ ପରିଚ୍ଛେଦ :

# ଓଡ଼ିଶାରେ ସାର୍ ବିଶ୍ୱେଶ୍ୱରାୟା

ସାର୍ ବିଶ୍ୱେଶ୍ୱରୟାଙ୍କ ଖ୍ୟାତି କେବଳ ମହୀଶୂର ରାଜ୍ୟରେ ସୀମାବଦ୍ଧ ନ ରହି ଚତୁର୍ଦ୍ଦିଗରେ ବିଚ୍ଛୁରିତ ହୋଇଗଲା । ସେ କେବଳ ଜଳସେଚନ ବା ଜଳଯୋଗାଣ ବିଷୟରେ ଜଣେ ଅଭିଜ୍ଞ ବ୍ୟକ୍ତି ତାହାନୁହେଁ, ତାଙ୍କର ଯୋଜନା ଏବଂ ବିଭିନ୍ନ ବୈଷୟିକ ବିଷୟରେ ଜ୍ଞାନ ଏବଂ ପ୍ଲାନିଂ ପାଇଁ ବିଭିନ୍ନ ପ୍ରଦେଶରେ ଭିନ୍ନ ଭିନ୍ନ ସମୟରେ ତାଙ୍କର ପରାମର୍ଶ ଆବଶ୍ୟକ ହେଲା । ମହୀଶୂର, ହାଇଦରାବାଦ, ବରୋଦା, ଭୋପାଳ, ଗୋଓ୍ୱାଲିୟର, ଇନ୍ଦୋର, କାଥେଓ୍ୱାଡ଼, କୋହ୍ଲାପୁର, ଭବନଗର, ସାଙ୍ଗଲି, ଅକ୍‌କଲକୋଟ, ମୋରଭି, ଫାଲଟନ ଓ ବଙ୍କନର, ବମ୍ବେ, କରାଚୀ, ସୁକୁର, ଧୂଳିଆ, ନାସିକ, ପଣ୍ଡରପୁର, ବୀଜାପୁର, ନାଗପୁର, ଧରଓ୍ୱାର, ବେଲଗାଁଓ, ଅହମଦାବାଦ, ପୁନା, ରାଜକୋଟ, ଗୋଆ ଓ ଆଡ଼େନ୍ ପ୍ରଭୃତି ପୂର୍ବତନ ରାଜ୍ୟ, ବହୁ ନଗର ଏବଂ ସହର ତାଙ୍କର ପରାମର୍ଶରେ ଉପକୃତ ହୋଇଥିଲେ । ଭାରତର ବଡ଼ ବଡ଼ ନଦୀ ତଥା ଗଙ୍ଗା, ସିନ୍ଧୁ, ମହାନଦୀ, ମୋସୀ, ଇସୀ, କାବେରୀ ଓ ତୁଙ୍ଗଭଦ୍ରା ପ୍ରଭୃତି ନଦୀ ସମୂହର ନିୟନ୍ତ୍ରଣ କରିବାରେ ସେ ସଫଳ ହୋଇଥିଲେ ।

ମହାନଦୀ ହେଉଛି ଓଡ଼ିଶାର ଦୀର୍ଘତମ ନଦୀ । ମହାନଦୀ ଅବବାହିକାର କ୍ଷେତ୍ରଫଳ ୧,୪୧,୫୮୯ ବର୍ଗକିଲୋମିଟର ହେଲେ ମଧ୍ୟ ଓଡ଼ିଶା ମଧ୍ୟରେ ଏହାର କ୍ଷେତ୍ରଫଳ ୬୫,୫୮୦ ବର୍ଗ କିଲୋମିଟର । ଏଥିରେ ବାର୍ଷିକ ହାରାହାରି ୯୨୮୨୦ ନିୟୁତ ଘନ ମିଟର ଜଳ ପ୍ରବାହିତ ହୋଇଥାଏ । ସମୟ ସମୟରେ ଏଥିରେ ପ୍ରଳୟଙ୍କରୀ ବନ୍ୟାଆସି ଓଡ଼ିଶାର ଜନଜୀବନକୁ ଅସ୍ତବ୍ୟସ୍ତ କରିପକାଏ । ଏହିପରି ଏକ ପ୍ରଳୟଙ୍କରୀ ବନ୍ୟା ୧୯୩୭ ମସିହାରେ ହୋଇଥିଲା । ସେଥିରେ ନଦୀର ବନ୍ୟାଜଳ କୂଳ ଲଂଘି ଓଡ଼ିଶାର ପ୍ରଭୂତ କ୍ଷତି ଘଟାଇଥିଲା । ଲକ୍ଷ ଲକ୍ଷ ଟଙ୍କା ମୂଲ୍ୟର ଫସଲ ନଷ୍ଟ ହେବା ସଙ୍ଗେ ସଙ୍ଗେ ସାଧାରଣ ଲୋକଙ୍କର ସ୍ଥାବର ଅସ୍ଥାବର ସମ୍ପତ୍ତିର ପ୍ରଚୁର କ୍ଷୟକ୍ଷତି ହୋଇଥିଲା । ତତ୍‌କାଳୀନ ଓଡ଼ିଶାର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ବିଶ୍ୱନାଥ ଦାଶଙ୍କ ଅନୁରୋଧ କ୍ରମେ ମହାତ୍ମାଗାନ୍ଧି ଓଡ଼ିଶାକୁ ଆସିଥିଲେ । ସେ ଓଡ଼ିଶାର ଜନସାଧାରଣଙ୍କର ଦୁଃଖ ଦୈନ୍ୟ ଓ ବିପର୍ଯ୍ୟୟ ଅବସ୍ଥା ଦେଖି ଅଭିଭୂତ ହୋଇଯାଇଥିଲେ । ସେ ଏହି ବିଷୟରେ ସାର୍ ବିଶ୍ୱେଶ୍ୱରୟାଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଓଡ଼ିଶାର ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାଶଙ୍କୁ ସେ କହିଥିଲେ ତାଙ୍କର ପରାମର୍ଶ

ନେବାପାଇଁ । ସେଥିପାଇଁ ସେ ଯଦି ସାହାଯ୍ୟ ମାଗନ୍ତି, ବିଶ୍ୱେଶ୍ୱରୟାଙ୍କ ଶକ୍ତି ଓ ସମସ୍ତ ସାମର୍ଥ୍ୟ ଅନୁସାରେ ତାଙ୍କୁ ସାହାଯ୍ୟ ଦେବାପାଇଁ ଅନୁରୋଧ କରିଥିଲେ ।

ବିଶ୍ୱେଶ୍ୱରୟାଙ୍କୁ ଓଡ଼ିଶାର ନଦୀଗୁଡ଼ିକର ସମସ୍ୟା ସମ୍ପର୍କରେ ପୂର୍ଣ୍ଣ ବିବରଣୀ ଦିଆଗଲା ଏବଂ ତତ୍ ସଂକ୍ରାନ୍ତୀୟ ଆଡ଼ାମ୍‌ସ କମିଟି ରିପୋର୍ଟ ଦିଆଗଲା । ଏହି କମିଟି ରିପୋର୍ଟଟିକୁ ସେ ପରୀକ୍ଷା କରି ଦେଖିଲେ । ସେଥିରେ ଅନେକ ତଥ୍ୟର ଅଭାବ ପରିଲକ୍ଷିତ ହେଲା । ଏହା ସତ୍ତ୍ୱେ ମଧ୍ୟ ସେ ୧୯୩୭ ମସିହାରେ ଏକ ପ୍ରାଥମିକ ରିପୋର୍ଟ ପ୍ରସ୍ତୁତ କରିଥିଲେ । ବନ୍ୟା ନିୟନ୍ତ୍ରଣ ପାଇଁ ଏହି ସବୁ ନଦୀରେ ଜଳଭଣ୍ଡାର ହୋଇପାରିବ ନାହିଁ ବୋଲି ପୂର୍ବ ରିପୋର୍ଟକୁ ସେ ସ୍ୱୀକାର କରି ନ ଥିଲେ । ସେ କହିଥିଲେ ମହାନଦୀ ଉପର ମୁଣ୍ଡରେ ଜଳଭଣ୍ଡାର କରଯାଇ କେବଳ ବନ୍ୟା ନିୟନ୍ତ୍ରଣ କରଯାଇପାରେ ( Reservoirs across Mahanadi, the only remedy for flood control ) ତାଙ୍କର ପରାମର୍ଶ ଅନୁସାରେ ତିନିଜଣ ପ୍ରଖ୍ୟାତ ଇଞ୍ଜିନିୟରଙ୍କୁ ନେଇ ଏକ କମିଟି ଏହାର ଅଧିକ ଅନୁସନ୍ଧାନ କରିବାକୁ କୁହାଗଲା ।

୧୯୩୮ ମସିହାରେ ସାର୍ ବିଶ୍ୱେଶ୍ୱରୟାଙ୍କୁ ଓଡ଼ିଶା ପରିଦର୍ଶନ କରିବାକୁ ଅନୁରୋଧ କରଗଲା । ଅନୁରୋଧ ରକ୍ଷାକରି ସେ ଓଡ଼ିଶା ଆସିଲେ ଏବଂ ଦୀର୍ଘ ୧୦ ଦିନ ଓଡ଼ିଶାରେ ରହି ମହାନଦୀର ତ୍ରିକୋଣଭୂମି ଅଞ୍ଚଳ ପରିଦର୍ଶନ କରିଥିଲେ । ୧୯୩୯ ମସିହାରେ ସାର୍ ବିଶ୍ୱେଶ୍ୱରୟା ଦ୍ୱିତୀୟ ରିପୋର୍ଟ ଦେଇଥିଲେ । ପ୍ରକୃତରେ ଦେଖିବାକୁ ଗଲେ ମହାନଦୀର ୩ଟି ଉପନଦୀରେ ବନ୍ୟା ଆସିଲେ ମହାନଦୀରେ ବନ୍ୟାହୁଏ । ଏହି ତିନୋଟି ଉପନଦୀରେ ଡ୍ୟାମ ନିର୍ମିତ ହେଲେ ମହାନଦୀରେ ବନ୍ୟା ନିୟନ୍ତ୍ରିତ ହୋଇପାରିବ । ମହାନଦୀରେ ପ୍ରଚୁର ପରିମାଣରେ ମୃତ୍ତିକାକ୍ଷୟ ହୋଇ ପଟୁ-ମାଟି ଓ ବାଲି ମୁହାଣରେ ଜମା ହୋଇ ଯାଉଛି । ଏହା ଫଳରେ ନଦୀଶଯ୍ୟାର ପତ୍ତନ ବୃଦ୍ଧି ପାଉଛି । ସମୁଦାୟ ପଟୁମାଟି, ବାଲି ଓ ବନ୍ୟାଜଳ ପ୍ଲାବିତ ହେବା ପାଇଁ ଯେଉଁ ଶଯ୍ୟାପ୍ରସ୍ଥ ଆବଶ୍ୟକ ତାହା ଅଭାବ ହେବ । ଯାହା ଫଳରେ ନଦୀ ସଂରକ୍ଷିତ ଦୁଇପଟ ବନ୍ଧ ବା କୂଳ ଲଙ୍ଘି ଜନବସତିକୁ ପ୍ଲାବିତ କରିବ । ସେଥିପାଇଁ ନଦୀ ମୁହାଣକୁ ସଦାସର୍ବଦା ଡ୍ରେଜିଙ୍ଗ ବା ଖୋଳାଯିବା ଆବଶ୍ୟକ ପଡ଼ିବ, ତାହା ହେଲେ ଯାଇଁ ନଦୀଜଳ ସମୁଦ୍ରକୁ ସ୍ୱଚ୍ଛନ୍ଦରୂପେ ନିଷ୍କାସିତ ହୋଇ ପାରିବ ।

୧୯୨୭ ମସିହାରେ ଯେଉଁ କମିଟି ବସିଥିଲା ସେହି କମିଟି ମହାନଦୀର ଜଳ ମଲଗୁଣୀ ନଦୀ ଦେଇ ଚିଲିକାରେ ଛାଡ଼ିବା ପ୍ରସ୍ତାବର ବିରୋଧରେ ମତ ଦେଇ ଥିଲା । ସେମାନଙ୍କର ମତ ହେଲା ମଲଗୁଣୀ ବାଟେ ଅଧିକ ଗଭୀରର ମାଟି ଖୋଳିବାକୁ ପଡ଼ିବ । ଏହାର ଖର୍ଚ୍ଚ ଅଟକଳ ବହୁ ଅଧିକ ହେବ । ସାର୍ ବିଶ୍ୱେଶ୍ୱରୟା

ଗମ୍ଭୀର ମାଟି ଖୋଳା ଦ୍ୱାରା ଅଧିକ ଖର୍ଚ୍ଚକୁ ଏଡ଼େଇ ଦେବାପାଇଁ ଏକ ଉପାୟ ଚିନ୍ତାକଲେ । ସେ କହିଲେ ଯେ, ମହାନଦୀରେ ଏକ ଅନୁଚ୍ଚ ଡ୍ୟାମ କିମ୍ବା ବ୍ୟାରେଜ ନିର୍ମାଣ କରି ଉଦ୍‌ବୃତ୍ତ ଜଳକୁ ନାଳ ସାହାଯ୍ୟରେ ମଲ୍ଲଗୁଣୀ ନଦୀରେ ପକାଇ ଚିଲିକାରେ ଛଡାଯାଇ ପାରିବ । ଏତଦ୍ୱାରା ବନ୍ୟା ସମୟରେ ଏହି ଜଳଭଣ୍ଡାରରେ ବନ୍ୟାଜଳକୁ କିଛି ସମୟ ଧରି ରଖି ଧୀରେ ଧୀରେ ସମୁଦ୍ରକୁ ଛଡ଼ାଯାଇ ପାରିବ । ଏହି ଜଳଧାରରୁ ଜଳବିଦ୍ୟୁତ ସଂଗ୍ରହ କରିବା ସହିତ ସେହି ଜଳକୁ ଜଳସେଚନରେ ବିନିଯୋଗ କରି ଦେଶର ଆର୍ଥିକ ମାନଦଣ୍ଡକୁ ସୁଧାରି ହେବ ।

ଏତଦ୍‌ବ୍ୟତୀତ ସେ ଅନ୍ୟ ଏକ ପ୍ରସ୍ତାବ ଦେଲେ । ମହାନଦୀରେ ତିନୋଟି ସ୍ଥାନରେ ନଦୀବନ୍ଧ କରି ବନ୍ୟାଜଳକୁ ଧରି ରଖି ସେଥିରୁ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରିବା ସହିତ ସେହି ଜଳକୁ ଜଳସେଚନ ଦ୍ୱାରା ବିନିଯୋଗ କରିହେବ । ହୀରାକୁଦ, ଟିକରପଡା ଓ ନରାଜ ପ୍ରଭୃତି ଉପଯୁକ୍ତ ସ୍ଥାନ ବୋଲି ସେ ମତ ଦେଇଥିଲେ ।

ଗମ୍ଭୀର ଅନୁଧ୍ୟାନ କରି ସେ ଏକ ବହୁମୁଖୀ ଯୋଜନା ପ୍ରସ୍ତୁତ କରି ଭାରତ ସରକାରଙ୍କୁ ଦେଇଥିଲେ । ସେହି ଚିଠା ଯୋଜନା ପରୀକ୍ଷା କରିବା ଲାଗି ସରକାର ଏକ ବିଶେଷଜ୍ଞ କମିଟି ନିଯୁକ୍ତ କଲେ । ସେଥିରେ ସାର୍ ବିଶ୍ୱେଶ୍ୱରାୟା ସଭ୍ୟ ରହିଥିଲେ । ଅନେକ କମିଟିରେ ସାର୍ ବିଶ୍ୱେଶ୍ୱରାୟା, ଇଞ୍ଜିନିୟର ରଙ୍ଗେୟା ଓ ଡଃ ଅଯୋଧ୍ୟାନାଥ ଖୋସଲାଙ୍କ ପରି ବ୍ୟକ୍ତି ଅଧ୍ୟକ୍ଷ ଥିଲେ ।

ବିଶ୍ୱେଶ୍ୱରାୟାଙ୍କ ଉକ୍ତ ଯୋଜନା ହୀରାକୁଦ ବନ୍ଧ ଓ ଜଳଭଣ୍ଡାର ପ୍ରତିଷ୍ଠା କରିବା ଦିଗରେ ପଥ ସୁଗମ କରିଦେଲା । ପ୍ରକୃତରେ ଏହା ଭାରତ ସ୍ୱାଧୀନ ହେଲାପରେ କାର୍ଯ୍ୟକାରୀ ହୋଇ ମହାନଦୀରେ ବନ୍ୟା ନିୟନ୍ତ୍ରଣ ହେବା ସହିତ ବିଦ୍ୟୁତ ଶକ୍ତି ଉତ୍ପାଦିତ ହୋଇ ବଡ଼ ବଡ଼ କଳକାରଖାନା ଓ ହଜାର ହଜାର ଗ୍ରାମକୁ ଗ୍ରାମ୍ୟ ବିଦ୍ୟୁତ ଯୋଗାଣ ମାଧ୍ୟମରେ ଶକ୍ତି ଯୋଗାଇ ଦେଲା । ହୀରାକୁଦବନ୍ଧ ଯୋଜନାରୁ ଜଳସେଚିତ ହୋଇ ପଶ୍ଚିମ ଓଡ଼ିଶାକୁ ଶସ୍ୟଶ୍ୟାମଳା କରିଦେଲା ।

ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଇଞ୍ଜିନିୟର ଅଯୋଧ୍ୟାନାଥ ଖୋସଲା ସ୍ୱାଧୀନତାର ଠିକ୍ ପରେ ପରେ କେନ୍ଦ୍ରୀୟ ଜଳକମିଶନର ଅଧ୍ୟକ୍ଷ ଭାବରେ ଏହି ଯୋଜନାର ସଫଳ ରୂପାୟନ କଲେ । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ୧୯୪୮ ମସିହା ଏପ୍ରିଲ ୧୨ ତାରିଖରେ ହୀରାକୁଦ ଜଳବିଦ୍ୟୁତ୍ ପରିକଳ୍ପନାର ଶିଳାନ୍ୟାସ କରିଥିଲେ । ମାତ୍ର ୮ବର୍ଷ ମଧ୍ୟରେ ବହୁ

ସଖ୍ୟକ ଇଞ୍ଜିନିୟର, କାରିଗର ଓ ଶ୍ରମିକମାନଙ୍କ ଅକ୍ଲାନ୍ତ ପରିଶ୍ରମରେ ଯୋଜନା କାର୍ଯ୍ୟ ସମ୍ପୂର୍ଣ୍ଣ ହେଲା । ୧୯୫୭ ଜାନୁୟାରୀ ୧୩ ତାରିଖରେ ସେହି ମହାମାନ୍ୟ ପଣ୍ଡିତ ନେହେରୁ ବନ୍ଧର ଶୁଭ ଉଦ୍‌ଘାଟନ ଉତ୍ସବରେ ପୁରୋଧା ହୋଇ ୧୬ ମାଇଲ (୨୫.୬ କି.ମି.) ଦୈର୍ଘ୍ୟ ବିଶିଷ୍ଟ ପୃଥିବୀର ଦୀର୍ଘତମ ବନ୍ଧକୁ ଆନନ୍ଦ କୋଳାହଳ ମଧ୍ୟରେ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ ।

ମହାନଦୀ ଉପରେ ନିର୍ମିତ ମୁଖ୍ୟ ବନ୍ଧର ଦୈର୍ଘ୍ୟ ୩ ମାଇଲ (୪.୮ କି. ମି.) । ନଦୀର ଦୁଇ ପାର୍ଶ୍ୱରେ ଥିବା ଡାଇକ୍‌ର (ପରିଖା)ର ଦୈର୍ଘ୍ୟ ୧୩ ମାଇଲ (୨୦.୮ କି. ମି) । ଜଳାଶୟର କ୍ଷମତା ୬୬ ଲକ୍ଷ ଏକର ଫୁଟ (୦.୮୧ ମିଲିଅନ ହେକ୍ଟର ମିଟର) ଏବଂ ପୂର୍ଣ୍ଣ ଜଳଭଣ୍ଡାରର ବିସ୍ତାରିତ କ୍ଷେତ୍ରଫଳ ୨୮୮ ବର୍ଗ ମାଇଲ (୭୪୫.୯୨ ବର୍ଗ କି. ମି) । ଏହାର ସର୍ବୋଚ୍ଚ ଉଚ୍ଚତା ୧୯୫ ଫୁଟ (୫୯.୪୪ ମିଟର) । ବନ୍ୟା ନିଷ୍କାସନର ସର୍ବୋଚ୍ଚ ହାର ୧୫ ଲକ୍ଷ କ୍ୟୁସେକ୍ (୦.୦୪୨ କ୍ୟୁମେକ) ଏହି ଜଳବିଦ୍ୟୁତ ପ୍ରକଳ୍ପକୁ ସମ୍ପୂର୍ଣ୍ଣ କରିବାର ଗୁରୁଦାୟିତ୍ୱ ନେଇଥିଲେ ସୁଦକ୍ଷ ଚିଫ୍ ଇଞ୍ଜିନିୟର ଆର. ପି. ବଶିଷ୍ଠ, କନଓ୍ୱାର ସେନ ଓ ଶ୍ରୀ ତିରୁମଲ ଆୟାଙ୍ଗାର । ୧୯୫୭ ମସିହା ଡ଼ିସେମ୍ବର ୧୮ ତାରିଖ ଦିନ ହିରାକୁଦ ବନ୍ଧ ସହିତ ନିର୍ମିତ ହୋଇଥିବା ଜଳବିଦ୍ୟୁତ କେନ୍ଦ୍ରରୁ ପ୍ରଥମେ ବିଦ୍ୟୁତ ଉତ୍ପାଦନ କରଯାଇ ଉଚ୍ଚତର ଶକ୍ତି ସମ୍ପନ୍ନ ଟ୍ରାନସ୍‌-ମିସନ୍ ଲାଇନ ଦ୍ୱାରା ଓଡ଼ିଶାର ବିଭିନ୍ନ ଶିଳ୍ପ କେନ୍ଦ୍ରମାନଙ୍କୁ ବିଦ୍ୟୁତ୍ ଶକ୍ତି ଯୋଗାଣ ଆରମ୍ଭ କରଯାଇଥିଲା ।

ହୀରାକୁଦ ଯୋଜନା ସମ୍ପୂର୍ଣ୍ଣ ହେବା ପୂର୍ବରୁ ଓଡ଼ିଶାରେ ଜଳବିଦ୍ୟୁତ ଉତ୍ପାଦନ କେବଳ ମାଛକୁଣ୍ଡ ଯୋଜନାରୁ ମାତ୍ର ୩୦ ମେଗାଓ୍ୱାଟରେ ସୀମିତ ଥିଲା । ୧୯୬୪ ମସିହା ଫେବୃୟାରୀ ୧ ତାରିଖରେ ଚିପିଲିମା ଠାରେ ୩ଟି ୟୁନିଟ୍ ବିଶିଷ୍ଟ ବିଦ୍ୟୁତ କେନ୍ଦ୍ର ନିର୍ମାଣ ଶେଷ ହେଲା । ଶସ୍ତା ବିଦ୍ୟୁତ ଶକ୍ତିର ସୁଯୋଗ ନେଇ ୧୯୫୩ ମସିହାରେ ହିନ୍ଦୁସ୍ଥାନ ଷ୍ଟିଲର କାରଖାନା ରାଉରକେଲାଠାରେ ସ୍ଥାପନ ହେବାକୁ ଚୂଡାନ୍ତ ହେଲା । ସେହିପରି ହୀରାକୁଦ ଆଲୁମିନିୟମ କାରଖାନା, ବରଗଡ଼ ସିମେଣ୍ଟ କାରଖାନା, ରାଜଗାଙ୍ଗପୁର ସିମେଣ୍ଟ କାରଖାନା, ବେଲପାହାଡ଼, ବ୍ରଜରାଜନଗର ଓ ଯୋଡ଼ାଠାରେ ବଡ ବଡ କାରଖାନା ଗଢ଼ି ଉଠିଲା । ହୀରାକୁଦ ଜଳବିଦ୍ୟୁତ କେନ୍ଦ୍ର ଓଡ଼ିଶାର ଶିଳ୍ପ ପ୍ରସାର ଦିଗରେ ଯେ ସହାୟକ ହୋଇଛି, ଏହା ବିନା ଦ୍ୱିଧାରେ କୁହାଯାଇପାରେ ।

ସଦା ସର୍ବଦା ବଙ୍ଗୋପସାଗର କୂଳବର୍ତ୍ତୀ ସମୃଦ୍ଧ ଜିଲ୍ଲାଗୁଡ଼ିକ ମହାନଦୀର ବିଭୀଷିକାମୟ ବନ୍ୟାରେ ପ୍ରପୀଡ଼ିତ ହୋଇଆସୁଥିଲା । ବ୍ରିଟିଶ ଶାସନର ଦୁଇଶହ ବର୍ଷ ମଧ୍ୟରେ ସାର୍ ଆର୍ଥର କଟନ୍ ମହାନଦୀ ଓ ବିରୂପା ନଦୀରେ କଟକଠାରେ

ଆନିକଟ କରି କଟକ ଜିଲ୍ଲାର ପ୍ରାୟ ୨.୫୦ ଲକ୍ଷ ଏକର ( ୧.୦୧ ଲକ୍ଷ ହେକ୍ଟର ) ଜମିକୁ ଖରିଫ ଜଳସେଚନ ବ୍ୟବସ୍ଥା କରାଇ ପାରିଥିଲେ । ଏହା ସହିତ ମହାନଦୀର ଉଭୟ ପାର୍ଶ୍ୱରେ କଟକ ଠାରୁ ନିମ୍ନ ଅଞ୍ଚଳ ପର୍ଯ୍ୟନ୍ତ ବନ୍ୟା ନିରୋଧକ ବନ୍ଧ ନିର୍ମାଣ କରାଇ କେନାଲ ଜଳସେଚିତ ଅଞ୍ଚଳର ସୁରକ୍ଷା ପାଇଁ ବ୍ୟବସ୍ଥା କରାଇ ପାରିଥିଲେ । ତ୍ରିକୋଣ ଭୂମି ଅଞ୍ଚଳର ବନ୍ୟା ନିୟନ୍ତ୍ରଣ ପାଇଁ ହୀରାକୁଦ ବନ୍ଧର କରିକଳ୍ପନା କରାଯାଇଥିଲା । ମହାନଦୀର ବନ୍ୟାଜଳର ସର୍ବୋଚ୍ଚ ପରିମାଣ ହୀରାକୁଦଠାରେ ୧୫ ଲକ୍ଷ କ୍ୟୁସେକ ( ୪୨୨୪୫ କ୍ୟୁମେକ ) ହେଲେ ମଧ୍ୟ ନିମ୍ନ ଅବବାହିକାର ୯ ଲକ୍ଷ କ୍ୟୁସେକ ( ୨୫୪୭୦ କ୍ୟୁମେକ ) ରେ ସୀମିତ ରଖା ଯାଇଛି । ନଗର ତଳକୁ ୧୦ ଲକ୍ଷ କ୍ୟୁସେକ ( ୨୮୩୦୦ କ୍ୟୁମେକ ) ହେବା ପାଇଁ ବନ୍ୟା ପ୍ରତିରୋଧକାରୀ ବନ୍ଧ ବାଡ଼ ନିର୍ମିତ ହୋଇଛି ।

—*—

ଷୋଡ଼ଶ ପରିଚ୍ଛେଦ :

# ଖ୍ୟାତି ସମ୍ପନ୍ନ ବିଶ୍ୱେଶ୍ୱରାୟା

ସାର୍ ବିଶ୍ୱେଶ୍ୱରାୟାଙ୍କ ଜ୍ଞାନ, ପାଣ୍ଡିତ୍ୟ, ଦୂରଦୃଷ୍ଟି ଓ କାର୍ଯ୍ୟଦକ୍ଷତା ତଥା ନିଷ୍ଠାପର ହୋଇ ନିର୍ଭୟରେ କାହାରିକୁ ଅନୁଗ୍ରହ ପ୍ରଦର୍ଶନ ବିନା କର୍ତ୍ତବ୍ୟ ସମ୍ପାଦନ କରିବାର ଗୁଣ ଯୋଗୁଁ ସେ ଯଶ ଖ୍ୟାତିର ସର୍ବୋଚ୍ଚ ପାବଚ୍ଛକୁ ଉଠିପାରିଛନ୍ତି । ସେ ତାଙ୍କ ଜୀବନକାଳ ମଧ୍ୟରେ ବହୁ ଗୁରୁତ୍ୱପୂର୍ଣ୍ଣ କମିଟିମାନଙ୍କରେ ସଭ୍ୟ, ପରାମର୍ଶଦାତା ଓ ଅଧ୍ୟକ୍ଷ ରହିଥିଲେ । ଏପରିକି ଯେଉଁ ସଂସ୍ଥା ବା ବଡ଼ ବଡ଼ କାର୍ଯ୍ୟରେ ଦୁର୍ନୀତିର ସନ୍ଦେହ କରାଯାଉଥିଲା, ସେଠାରେ ସାର୍ ବିଶ୍ୱେଶ୍ୱରାୟାଙ୍କୁ ତାର ଅନୁସନ୍ଧାନ ପାଇଁ ମଧ୍ୟ ଅନୁରୋଧ କରାଯାଉଥିଲା ।

ପ୍ରାଚୀନ ଭାରତର ସିନ୍ଧୁନଦୀ ହିମାଳୟରୁ ବାହାରି ବର୍ତ୍ତମାନ ପାକିସ୍ତାନର ସିନ୍ଧୁପ୍ରଦେଶ ଦେଇ ପ୍ରବାହିତ ହେଉଛି । ଭାରତ ସ୍ୱାଧୀନତା ପାଇବା ପୂର୍ବରୁ ଏହା ବମ୍ବେ ପ୍ରଦେଶର ଅନ୍ତର୍ଗତ ଥିଲା । ସୁକୁର ବ୍ୟାରେଜ କଥା ପୂର୍ବରୁ କୁହାଯାଇଛି । ୧୯୨୩ ମସିହାରେ ସିନ୍ଧୁନଦୀ ଉପରେ ସୁକୁରଠାରେ ବ୍ୟାରେଜ ନିର୍ମିତ ହୋଇଥିଲା । ଏହାର ଦୈର୍ଘ୍ୟ ୧.୬ କିଲୋମିଟର ହେବ । ସେଥିରେ ୧୮.୩୦ ମିଟର ପ୍ରସ୍ଥ ବିଶିଷ୍ଟ ୬୬ଟି ଆର୍ଚ (Arch) ଅଛି । ପ୍ରତ୍ୟେକରେ ୫୦ ଟନ ଓଜନର ଲୌହ ଗେଟ ଖଞ୍ଜାଯାଇଛି । ଏହି ବ୍ୟାରେଜର ୧୦୪୧୭ କିଲୋମିଟର ବିଶିଷ୍ଟ ସାତଗୋଟି ମୁଖ୍ୟ କେନାଲ, ଶାଖା ଓ ଉପଶାଖା କେନାଲ ଦ୍ୱାରା ପ୍ରାୟ ୨୬ ଲକ୍ଷ ୩୦ ହଜାର ହେକ୍ଟର ଜମିରେ ଜଳସେଚିତ ହେଉଛି । ଏହାର ମୂଳ ଅଟକଳ ୧୯.୯୬ କୋଟି ଥିବା ବେଳେ ୧୯୪୧ ମସିହାରେ ଯୋଜନାର ପୂର୍ଣ୍ଣାଙ୍ଗ ସମୟରେ ୨୬ କୋଟିକୁ ବୃଦ୍ଧି ପାଇଥିଲା । ଏହି ପ୍ରକଳ୍ପଟି ପୂର୍ଣ୍ଣାଙ୍ଗ ହେବାପାଇଁ ୧୪ ବର୍ଷ ସମୟ ଲାଗିଥିଲା ।

ଚିରାଚରିତ ପ୍ରଥା ଅନୁସାରେ ଯେ କୌଣସି କାର୍ଯ୍ୟ ହେଲେ ସେଥିରେ ଦୁର୍ନୀତିର ଦୋଷାରୋପ କରାଯାଇଥାଏ । କିଛି କାର୍ଯ୍ୟ ନହେଲେ ସମସ୍ତେ ଦୁର୍ନୀତି ମୁକ୍ତ । ସୁକୁର ବ୍ୟାରେଜରେ ଅଭିଯୋଗ ହେଲା : ଏହାର ଡ଼ିଜାଇନ ଠିକ୍ ନାହିଁ । ଦ୍ୱିତୀୟତଃ ଏହି ନିର୍ମାଣ କାର୍ଯ୍ୟର ସୁପରିକଳ୍ପନାର ଅଭାବ, ଯାହାଦ୍ୱାରା ଅଧିକ ବ୍ୟୟ ଭାର ବଢ଼ିଗଲା । ଏହିପରି ଅଭିଯୋଗ ଓ ପ୍ରତି ଅଭିଯୋଗ ହେବାରୁ ବମ୍ବେ ସରକାର ଜନସାଧାରଣଙ୍କୁ ପ୍ରତିଶ୍ରୁତି ଦେଲେ ଯେ ସେ ବାହାରୁ ଖ୍ୟାତିସମ୍ପନ୍ନ ଇଞ୍ଜିନିୟର ଆଣାଇ ଏହାର ତଦନ୍ତ କରିବେ । ଭାରତରେ ଖ୍ୟାତିସମ୍ପନ୍ନ ଇଞ୍ଜିନିୟରଙ୍କ ମଧ୍ୟରେ ସର୍ବାଗ୍ରେ ସାର୍ ବିଶ୍ୱେଶ୍ୱରାୟାଙ୍କ ନାମ ଆସିଲା । ତାଙ୍କୁ ଏବଂ ତାଙ୍କ ସଙ୍ଗେ ହାଇଦ୍ରାବାଦ ଚିଫ୍ ଇଞ୍ଜିନିୟର ନବାବ୍ ଅଲୀ ନଓ୍ୱାଜ ଜଙ୍ଗଙ୍କୁ ଏହାର ଦାୟିତ୍ୱ ଅର୍ପଣ କରାଗଲା ।

ସେତେବେଳେ ସିନ୍ଧୁ ପ୍ରଦେଶର ଉତ୍ତାପ ସର୍ବୋଚ୍ଚ ୧୨୦° ଫାରେନହିଟ ଥିବାରୁ ସେଠାକୁ ଯିବାପାଇଁ ବାରଣ କରାଗଲା । କିନ୍ତୁ ବିଶ୍ୱେଶ୍ୱରାୟା ବାରଣ ନମାନି ଖରା-ଦିନେ ଚାରିମାସ ଅକ୍ଳାନ୍ତ ପରିଶ୍ରମ କରି ୧୯୨୯ ମସିହା ସେପ୍ଟେମ୍ବରମାସରେ ତଦନ୍ତ ରିପୋର୍ଟ ଦାଖଲ କଲେ ।

ତଦନ୍ତ ରିପୋର୍ଟରେ ସେ ଦର୍ଶାଇଲେ ଯେ, ଜନସାଧାରଣଙ୍କ ମନରେ ଯେଉଁ ଭ୍ରାନ୍ତ ଧାରଣା ଉପୁଜିଥିଲା ଯେ ଅର୍ଥର ଅପବ୍ୟବହାର ହୋଇଛି ବୋଲି ତାହା ସତ୍ୟ ନୁହେଁ । ବାରିକମିସ୍ତ୍ରୀ ବିଭାଗର ଇଞ୍ଜିନିୟରମାନଙ୍କର କାର୍ଯ୍ୟର ସେ ଉଚ୍ଚ ପ୍ରଶଂସା କରିଥିଲେ । ସେ କହିଲେ ଏହି ବିଭାଗର ଇଞ୍ଜିନିୟରମାନଙ୍କର କର୍ତ୍ତବ୍ୟ ନିଷ୍ଠା ଓ ସୁପରିଚାଳନା ପାଇଁ ଏହି କାର୍ଯ୍ୟଟି ହୋଇପାରିଲା । ଇଞ୍ଜିନିୟରମାନଙ୍କୁ ଜଳନିରୋଧକ ବଖରାରେ କାର୍ଯ୍ୟକରିବାକୁ ପଡୁଥିବାରୁ କାର୍ଯ୍ୟଟିକୁ ଧୀରେ ଧୀରେ କରିବାକୁ ପଡୁଥିଲା । ଏହାର ଅଟକଳ ଅତିକମ୍ ହୋଇଥିବାରୁ କୁଲିମୂଲିଆମାନଙ୍କୁ ଅଧିକ ମୂଲ୍ୟ ଦେଇ ହେଉ ନ ଥିଲା । ଏହାକୁ ବର୍ଦ୍ଧିତ ହାରରେ ଅଟକଳ କରି ଦୈହିକ ବଳ ପରିବର୍ତ୍ତେ ମେସିନ ଦ୍ୱାରା କରାଯିବା ଉଚିତ ଥିଲା । ଯାହାହେଉ ଏହାର ସୁପରିଚାଳନା ପାଇଁ ସେ ଇଞ୍ଜିନିୟରମାନଙ୍କ କାର୍ଯ୍ୟର ଉଚ୍ଚ ପ୍ରଶଂସା କରିଥିଲେ ଏବଂ ଏହା ଏକ ବୃହତ୍ ଓ କୁଶଳୀକାର୍ଯ୍ୟ ହୋଇଥିବାରୁ ଏହାର ଅଗ୍ରଗତି ଉତ୍ତମ ଅଟେ ବୋଲି ମତ ଦେଲେ ।

ଗୋଟିଏ ନଦୀ ଭିନ୍ନ ଭିନ୍ନ ରାଜ୍ୟ ବା ତତ୍କାଳୀନ ପ୍ରଦେଶ ମଧ୍ୟ ଦେଇ ପ୍ରବାହିତ ହୋଇଥାଏ । ଭିନ୍ନ ଭିନ୍ନ ରାଜ୍ୟରେ ବିବାଦ ଉପୁଜିଲେ ଏକ ଆରବିଟ୍ରେସନ କମିଟି ଏହାର ସମାଧାନ କରେ । ଏହିପରି ଏକ କମିଟିର ଅଧ୍ୟକ୍ଷ ହୋଇଥିଲେ ସାର ବିଶ୍ୱେଶ୍ୱରାୟା । ତୁଙ୍ଗଭଦ୍ରା ନଦୀ କର୍ଣ୍ଣାଟକ ( ମହୀଶୂର ) ରାଜ୍ୟରୁ ବାହାରି ତାମିଲନାଡୁ ( ମାଡ୍ରାସ) ରାଜ୍ୟ ଦେଇ ଆନ୍ଧ୍ର ( ହାଇଦରାବାଦ ) ରାଜ୍ୟରେ କୃଷ୍ଣା ନଦୀ ସଙ୍ଗେ ମିଶିଅଛି । ଏହି ତୁଙ୍ଗଭଦ୍ରା ନଦୀ ମାଡ୍ରାସ ଓ ହାଇଦ୍ରାବାଦ ରାଜ୍ୟକୁ ଦୁଇଭାଗରେ ବିଭକ୍ତ କରିଛି । କର୍ଣ୍ଣାଟକ ରାଜ୍ୟର ବରେଲ୍ଲୀ ଜିଲ୍ଲାର ହୋସପେଟ ଠାରେ ତୁଙ୍ଗଭଦ୍ରା ନଦୀବନ୍ଧ ଯୋଜନା କାର୍ଯ୍ୟକାରୀ ହୋଇଛି । ଏହି ଡ୍ୟାମର ଦୈର୍ଘ୍ୟ ୩.୨ କିଲୋମିଟର ।

ଏହା ରାଜ୍ୟର ସବୁଠାରୁ ବଡ ପରିକଳ୍ପନା । ସ୍ୱାଧୀନତା ପୂର୍ବରୁ ବରେଲ୍ଲୀ ମାଡ୍ରାସ ପ୍ରେସିଡେନ୍ସି ଅନ୍ତର୍ଗତ ଥିଲା । ଭାରତ ସ୍ୱାଧୀନ ହେଲାପରେ ଭାଷାଭିତ୍ତିକ ରାଜ୍ୟ ପୁନର୍ଗଠନ ସମୟରେ ଏହା କର୍ଣ୍ଣାଟକ ରାଜ୍ୟ ମଧ୍ୟରେ ରହିଲା । ୧୯୪୪ ମସିହାରେ ମାଡ୍ରାସ ଓ ହାଇଦ୍ରାବାଦ ରାଜ୍ୟ ମଧ୍ୟରେ ଏକ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା, କେଉଁ ରାଜ୍ୟ କେତେ ଜଳ ବ୍ୟବହାର କରିପାରିବ । ମହୀଶୂର ରାଜ୍ୟ ଭଦ୍ରାନଦୀରେ ଲକ୍କାବଳୀଠାରେ ଓ ତୁଙ୍ଗ ନଦୀରେ ସକ୍କେବେଲ ଠାରେ ଦୁଇଟି ଡ୍ୟାମ ନିର୍ମାଣ

କଲେ । ମାଡ୍ରାସ ଓ ହାଇଦ୍ରାବାଦ ମିଳିମିଶି ହୋସପେଟ ଠାରେ ତୁଙ୍ଗଭଦ୍ରା ନଦୀରେ ଡ୍ୟାମ ନିର୍ମାଣ କରିବାକୁ ସ୍ଥିର କରିଥିଲେ । ଡ୍ୟାମ କାର୍ଯ୍ୟ ଆରମ୍ଭ ହେବା ପୂର୍ବରୁ ଭାରତ ସ୍ୱାଧୀନ ହୋଇଗଲା ।

୧୯୪୭ ମସିହାରେ ତତ୍କାଳୀନ ମାଡ୍ରାସର ମୁଖ୍ୟମନ୍ତ୍ରୀ ଭକ୍ତବତ୍ସଳମ୍ ଓ ହାଇଦ୍ରାବାଦର ପ୍ରଧାନ ମନ୍ତ୍ରୀ ସାର୍ ମୀର୍ଜା ଇସମାଇଲଙ୍କ ମଧ୍ୟରେ ଏକ ନୂତନ ଚୁକ୍ତି ସ୍ୱାକ୍ଷର କରିବାକୁ ପଡ଼ିଲା । ଦୁଇ ରାଜ୍ୟ ପ୍ରକଳ୍ପର ନକ୍ସା ଏବଂ ଡ଼ିଜାଇନକୁ ଗ୍ରହଣ କରିନେଲେ । କିନ୍ତୁ ଦୁଇରାଜ୍ୟ ମଧ୍ୟରେ ସୁରକି ଓ ସିମେଣ୍ଟ ବ୍ୟବହାରକୁ ନେଇ ବାଦାନୁବାଦ ଚାଲିଲା । ମାଦ୍ରାଜ ସରକାରଙ୍କର ଯୁକ୍ତି ହେଲା ହଜାର ହଜାର ଟନେକଲଗି ସୁରକିକୁ ଗୁଣ୍ଡକରିବାକୁ ପଡ଼ିବ । ଅତ୍ୟଧିକ ସମୟ ମଧ୍ୟ ଲାଗିବ । ଏହାର ଗୁଣାତ୍ମକମାନ ବିଷୟରେ କେହି କେଉଁ ନିର୍ଭର ପ୍ରତିଶ୍ରୁତି ଦେଇପାରିବେ ନାହିଁ । ଚୂନ, ଇଟା ଓ ଜାଳେଣି ମଧ୍ୟ ମାଡ୍ରାସ ରାଜ୍ୟରେ ଅଭାବ । ହାଇଦ୍ରାବାଦ ସରକାର କିନ୍ତୁ ସୁରକି ବ୍ୟବହାର କରାଯିବା ସପକ୍ଷରେ । ସେ କହିଲେ କଞ୍ଚାମାଲ ତଥା ଚୂନ, ଇଟା, ଜାଳେଣୀ ସବୁ ହାଇଦ୍ରାବାଦ ସରକାର ଯୋଗାଇ ଦେବ । ତୁଙ୍ଗଭଦ୍ରା ନଦୀରେ ଡଙ୍ଗା, ବୋଟ ସାହାଯ୍ୟରେ ନଦୀର ଅପର ପଟକୁ କଞ୍ଚାମାଲ ବୁହାହୋଇ ଯାଇପାରିବ । ଏହି ଆନ୍ତଃରାଜ୍ୟ ବିବାଦର ସମାଧାନ ପାଇଁ ଏକ ଆରବିଟ୍ରେସନ କମିଟି ଗଠିତ ହୋଇ ସାର୍ ମୋକ୍ଷଗୁଣ୍ଡମ୍ ବିଶ୍ୱେଶ୍ୱରୟା ସେଥିରେ ଚେୟାରମ୍ୟାନ ରହିଲେ । ଏହି ପ୍ରସ୍ତାବକୁ ଉଭୟ ରାଜ୍ୟ ସମ୍ମତି ଦେଲେ । ସାର୍ ବିଶ୍ୱେଶ୍ୱରୟା ସୁରକି ବ୍ୟବହାର ପାଇଁ ସମ୍ମତି ପ୍ରକାଶ କଲେ । ସେ କହିଲେ ଯେ, ସୁରକି ବ୍ୟବହାର କଲେ ଆମ ଦେଶର ସାଧାରଣ ନାଗରିକ ଓ ଗରିବ ଦୁଲିମୁଲିଆଙ୍କୁ ଅଧିକ ଦିନର କର୍ମ ମିଳିପାରିବ । ସୁରକିର ମାନ ଅତି ଉତ୍ତମ, ଏହା ସିମେଣ୍ଟର ସମକକ୍ଷ, ଦୀର୍ଘସ୍ଥାୟୀ ଓ ଶକ୍ତିଶାଳୀ । ପରିଶେଷରେ ସିମେଣ୍ଟ ଓ ସୁରକି ଉଭୟେ ବ୍ୟବହାର କରି ନିର୍ମାଣ କାର୍ଯ୍ୟ ଚାଲିବା ପାଇଁ ଉଭୟ ପକ୍ଷ ରାଜି ହେଲେ ।

ବମ୍ବେ ହେଉଛି ଭାରତର ପ୍ରବେଶ ଦ୍ୱାର । ଏହା ପ୍ରଥମେ ସାତଗୋଟି ଦ୍ୱୀପାଞ୍ଚଳ, କିଛି ସନ୍ତସନ୍ତିଆ ସ୍ଥାନ ଓ କେତେକ ସାମୁଦ୍ରିକ ଅଞ୍ଚଳର ସ୍ଥଳୀକରଣରୁ ସୃଷ୍ଟି । ଏହା ଚାରି ଦିଗରୁ ଉଚ୍ଚସ୍ଥାନ ଓ ପର୍ବତମାଳାରେ ପରିବେଷ୍ଟିତ । ସନ୍ତସନ୍ତିଆ ସ୍ଥାନ ଗୁଡ଼ିକର ଉନ୍ନତି ନ ହେଲେ ବମ୍ବେ ସହରର ସମ୍ପ୍ରସାରଣ ଅସମ୍ଭବ । ୧୯୧୧ ମସିହାରେ ୭୫୨୫୧ ବର୍ଗମିଟର ଅଞ୍ଚଳର ଉନ୍ନତି କରିବାକୁ ପାଞ୍ଚଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥିଲା । କିନ୍ତୁ ସେଥିରୁ ୨୪ ଲକ୍ଷ ଟଙ୍କା ଭଡ଼ା ମିଳୁଥିଲା । ଏହା ଏକ ଲାଭଜନକ ବ୍ୟବସାୟ ହୋଇଥିବାରୁ ରେଥର ଆଣ୍ଡ କମ୍ପାନୀ ବୋଲି ଗୋଟିଏ ଲଣ୍ଡନର ଇଞ୍ଜିନିୟରିଂ ଫାର୍ମ କେତେକ ସନ୍ତସନ୍ତିଆ ଅଞ୍ଚଳର ଉନ୍ନତି ପାଇଁ ଦୁଇଟି ସ୍କିମ ଦେଇଥିଲେ । ଗୋଟିଏ ୩୯୪ ହେକ୍ଟର ଜମିକୁ ୨୮୪.୫ ଲକ୍ଷ ଏବଂ ଦ୍ୱିତୀୟଟି ୫୧୫ ହେକ୍ଟରକୁ ୩୮୮ ଲକ୍ଷ । ପ୍ରଥମ ବିଶ୍ୱଯୁଦ୍ଧ ପାଇଁ ୧୯୧୯ ପର୍ଯ୍ୟନ୍ତ ଏହା ସ୍ଥଗିତ

ରହିଥିଲା । ଟାଟା କମ୍ପାନୀ ମଧ୍ୟ ଏହି କାର୍ଯ୍ୟ ପାଇଁ ଆଗ୍ରହୀ ଥିଲେ । ବମ୍ବେ ସରକାର ଲଣ୍ଡନର ଜର୍ଜ ବୁଗ୍ରନନଙ୍କ ପରାମର୍ଶରେ ଉନ୍ନୟନ ମନ୍ତ୍ରଣାଳୟ ଏହାର କାର୍ଯ୍ୟଭାର ହାତକୁ ନେଲେ । ୧୯୨୪ ମସିହା ପର୍ଯ୍ୟନ୍ତ କାର୍ଯ୍ୟର ଅଗ୍ରଗତି ହୋଇପାରିଲା ନାହିଁ, ଅନ୍ୟଥା ଅର୍ଥ ବ୍ୟୟହେଲା । ଏହାର ତଦନ୍ତ ଭାର ଯେତେ ଜଣ ବିଜ୍ଞଲୋକଙ୍କୁ ଦିଆଗଲା ସେଥିମଧ୍ୟରୁ ସାର୍ ବିଶ୍ୱେଶ୍ୱରୟା ଜଣେ । ଏହି "ବ୍ୟାକ୍ ବେ ରିକ୍ଲାମେସନ ସ୍କିମ"ର ଚେୟାରମ୍ୟାନ ଥିଲେ ଆହ୍ଲାହାବାଦ ହାଇକୋର୍ଟର ପ୍ରଧାନ ବିଚାରପତି ସାର୍ ଗ୍ରୀମ ଉଡ଼ ମିୟରସ୍ । ଚେୟାରମ୍ୟାନଙ୍କ ବ୍ୟତୀତ ଏହି କମିଟିରେ ପାଞ୍ଚଜଣ ସଭ୍ୟ ଥିଲେ, ସେଥିମଧ୍ୟରୁ ସାର୍ ବିଶ୍ୱେଶ୍ୱରୟା ହେଉଛନ୍ତି ଏକମାତ୍ର ଇଞ୍ଜିନିୟର । ଏହି କମିଟି ପ୍ରଥମେ ୧୯୨୬ ମସିହା ଅଗଷ୍ଟ ମାସରେ ବମ୍ବେଠାରେ ଏବଂ ପରେ ପରେ ଲଣ୍ଡନଠାରେ ଅନୁସନ୍ଧାନ ଆରମ୍ଭ କରି ୧୯୨୬ ମସିହା ଡ଼ିସେମ୍ବର ମାସରେ ତାର ପୂର୍ଣ୍ଣାଙ୍ଗ ରିପୋର୍ଟ ଦେଇଥିଲା । ଏହାପରେ ସାର୍ ବିଶ୍ୱେଶ୍ୱରୟାଙ୍କ ସୁଖ୍ୟାତି ଆନ୍ତର୍ଜାତିକ ସ୍ତରରେ ବଢ଼ିଯାଇଥିଲା ।

୧୯୨୨ ମସିହାରେ ଦିଲ୍ଲୀଠାରେ ନୂଆ ରାଜଧାନୀର ନିର୍ମାଣ କାର୍ଯ୍ୟ ଚାଲିଥାଏ । ଭାଇସରାୟଙ୍କ ବାସଗୃହ, କେନ୍ଦ୍ର ସରକାରଙ୍କର କାର୍ଯ୍ୟାଳୟ, ବିଧାନସଭା ଗୃହ ପ୍ରଭୃତି ନିର୍ମାଣ ହେବାପାଇଁ ଯୋଜନା ହେଉଥାଏ । ଭାରତ ସରକାର ସେତେବେଳେ ସାର୍ ମାଲକମ ହେଲେଙ୍କ ସଭାପତିତ୍ୱରେ ଏକ କମିଟି ଗଠନ କଲେ । ସେହି କମିଟିରେ ସାର୍ ବିଶ୍ୱେଶ୍ୱରୟା ଅନ୍ୟତମ ସଦସ୍ୟ ଥିଲେ । ଏହି କମିଟି ରାଜଧାନୀର ନିର୍ମାଣ ଓ ତାର ଅର୍ଥନୈତିକ ଦିଗପ୍ରତି ଅଧିକ ଧ୍ୟାନ ଦେଉଥିଲେ ଏବଂ ତାର ନକ୍ସାଗୁଡ଼ିକୁ ଯାଞ୍ଚ କରି ନିର୍ମାଣାଧୀନ ଗୃହଗୁଡ଼ିକୁ ତଦାରଖ କରୁଥିଲେ । ସମୟୋଚିତ କାର୍ଯ୍ୟକ୍ରମ ପାଇଁ କି କି ପଦକ୍ଷେପ ନିଆଯାଇ ପାରିବ, ସେଥିପାଇଁ ଉଚିତ୍ ପରାମର୍ଶ ଦେଉଥିଲେ ।

ଏସିଆ ମହାଦେଶର ଦୀର୍ଘତମ ନଦୀ ଗଙ୍ଗା ହିମାଳୟରୁ ବାହାରି ୧୬୦୦ କିଲୋମିଟରରୁ ଊର୍ଦ୍ଧ୍ୱ ପଥ ଅତିକ୍ରମ କରି କଲିକତାଠାରେ ବଙ୍ଗୋପସାଗରରେ ମିଶିଛି । ଗଙ୍ଗା ତାର ମୁହାଣ ନିକଟରେ ପ୍ରାୟ ୧୦୦ କିଲୋମିଟରରୁ ଅଧିକ ପଥ ସୁନାବ୍ୟ । ଛୋଟ ଛୋଟ ଜାହାଜ, ଷ୍ଟିମର ଓ ଯନ୍ତ୍ରଚାଳିତ ନୌକା ଚଳାଚଳ ପାଇଁ ଉପଯୁକ୍ତ । ମୁହାଣଟି ଜୁଆର ସମୟରେ ୧୦ରୁ ୩୦ କିଲୋମିଟର ପର୍ଯ୍ୟନ୍ତ ଜଳ ପୂରି ରହିଥାଏ । ୧୯୦୭ ମସିହାରେ ଗଙ୍ଗା ଉପରେ ଏକ ପୋଲ ନିର୍ମାଣ କରିବା କଥା ପ୍ରଥମେ ଚିନ୍ତା କରାଗଲା । ଦେଶୀ ହୁଅନ୍ତୁ ବା ବିଦେଶୀ ହୁଅନ୍ତୁ ଦୁଇଟି କମ୍ପାନିର ସହମତିରେ ଗୋଟିଏ କାର୍ଯ୍ୟ କରିବା କଠିଣ ବ୍ୟାପାର । ବିହାରଠାରେ ଏହିପରି ଏକପୋଲ ନିର୍ମାଣ କରିବା ପାଇଁ ନଦୀର ଦୁଇପଟରେ ଦୁଇଟି ରେଳବାଇ କମ୍ପାନି ସହମତ ହୋଇ ପାରିଲେ ନାହିଁ ।

୧୯୪୫ ମସିହାରେ ରେଲୱେ ବୋର୍ଡ଼ ଏହି ରେଳପଥର ସର୍ଭେ ଏବଂ ଅନୁସନ୍ଧାନ ପାଇଁ ଟଙ୍କା ମଞ୍ଜୁର କରି ଉପଯୁକ୍ତ ସ୍ଥାନ ନିରୂପଣ କରିବା ପାଇଁ

ଅନୁସନ୍ଧାନ ଆରମ୍ଭ କଲେ । 'ଗଙ୍ଗା ବ୍ରିଜ ପ୍ରୋଜେକ୍ଟ କମିଟି' ବା ଗଙ୍ଗାପୋଲ ପ୍ରକଳ୍ପ କମିଟି ବିଭିନ୍ନ ବିଷୟ ଯଥା ଟ୍ରାଫିକ ଓ ଇଞ୍ଜିନିୟରିଂ ସର୍ବେକୁ ବିବେଚନାକୁ ନେଇ ମୋକାମେହ ଉପଯୁକ୍ତ ସ୍ଥାନ ବୋଲି ବିବେଚନା କଲେ । ରାଜନୈତିକ କାରଣ ଯୋଗୁଁ ସ୍ଥାନ ନିର୍ବାଚନରେ ବାଧା ଉପୁଜିଲା । ମନୁଷ୍ୟ ମନୁଷ୍ୟ ମଧ୍ୟରେ ସ୍ୱାର୍ଥର ଉର୍ଦ୍ଧ୍ୱକୁ ବହୁତ କମ ଲୋକ ଉଠି ପାରନ୍ତି । ଗାଁ ଗାଁ ମଧ୍ୟରେ ପଡ଼ା ପଡ଼ା ମଧ୍ୟରେ କେଉଁଠାରେ କୂପ ବା ଟିଉବ୍ ଓଏଲ (ନଳକୂପ) ଖୋଳା ହେବ, ସ୍ଥାନ ନିର୍ବାଚନ କରିହୁଏ ନାହିଁ । ଶେଷରେ ମାଡ଼ପିଟ ହୋଇ କାର୍ଯ୍ୟଟି ଫଳବତୀ ହୋଇପାରେ ନାହିଁ । ଠିକ୍ ସେହିପରି ଲୋକମାନଙ୍କ ମତାମତକୁ ନେଇ ଅନେକ ସମୟରେ କିଛି କରିହୁଏ ନାହିଁ ।

ମୋକାମେହଠାରୁ ବିହାରର ପାଟଣା ଉପଯୁକ୍ତ ସ୍ଥାନ ବୋଲି ବିହାରର ରାଜ୍ୟପାଳ ଡ଼ଃ ସୟଦ ମହମ୍ମଦ ଯୁକ୍ତି ବାଢ଼ିଲେ । ସେତେବେଳେ ଡଃ ରାଜେନ୍ଦ୍ର ପ୍ରସାଦ ରାଷ୍ଟ୍ରପତି ଥିଲେ । ତାଙ୍କର ଜନ୍ମ ବିହାରରେ । ପଶ୍ଚିମବଙ୍ଗ ସରକାର ଓ ବାଣିଜ୍ୟ ଶିଳ୍ପ ବିଭାଗର ପ୍ରତିନିଧି ଫରକା କିମ୍ବା ରାଜମହଲଠାରେ ଉପଯୁକ୍ତ ସ୍ଥାନ ବୋଲି ଦାବୀ କଲେ । ଆସାମର ଚା' ବଗିଚାର ମାଲିକ ଏବଂ ଆସାମ ସରକାର ସାକ୍ରୀଗାଲି—ମଣିହାରୀ ଘାଟ ସ୍ଥାନଟି ଅଧିକ ଉପଯୋଗୀ ବୋଲି କହିଲେ । ପୁନାର ଖଡ଼କଭସଲ ହାଇଡ୍ରୋଲିକ ରିସର୍ଚ୍ଚ ଷ୍ଟେସନର ଡ଼ାଇରେକ୍ଟର ପାଟଣାର ତଳମୁଣ୍ଡରେ ଥିବା ଫତଓ୍ୱା ଓ ମାନହରଠାରେ ଦୁଇ ନାଳରେ ଦୁଇଟି ପୋଲ କରିବାକୁ ମତଦେଲେ ।

ଦେଶ ବିଭାଜିତ ହେଲାପରେ ଉପଯୁକ୍ତ ସ୍ଥାନ ନିରୂପଣର ସହଜ ଉପାୟ ପୁଣି ରାଜନୈତିକ ରୂପରେଖ ନେଇ ବିବାଦୀୟ ହୋଇପଡ଼ିଲା । ଏହି ପରିସ୍ଥିତି ବିଚାରକୁ ଆମ ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ କହିଲେ ଯେ ଏହି ବିଷୟଟିକୁ ଜଣେ ଖ୍ୟାତିସମ୍ପନ୍ନ ଉତ୍ତମ ଚରିତ୍ର ଏବଂ ଦୂରଦୃଷ୍ଟି ସମ୍ପନ୍ନ ହୋଇଥିବା ଇଞ୍ଜିନିୟରଙ୍କୁ ଦେବାପାଇଁ । ସେ ସାର୍ ମୋକ୍ଷଗୁଣ୍ଡମ ବିଶ୍ୱେଶ୍ୱରୟାଙ୍କ ନାମ ପ୍ରସ୍ତାବ କଲେ । ଏହି ପ୍ରସ୍ତାବକୁ ସମସ୍ତେ ସହୃଦୟତାସହ ଗ୍ରହଣ କରି ନେଲେ । ତତ୍କାଳୀନ ପରିବହନ ଓ ରେଳବାଇ ମନ୍ତ୍ରୀ ଏନ. ଗୋପାଳ ସ୍ୱାମୀ ଆୟାଙ୍ଗାର ୧୯୫୨ ମସିହା ଜାନୁୟାରୀ ୭ ତାରିଖରେ ବିଶ୍ୱେଶ୍ୱରୟାଙ୍କୁ ପତ୍ର ଲେଖି ଅନୁରୋଧ କଲେ । ଅବସରପ୍ରାପ୍ତ ଇଞ୍ଜିନିୟର ବିଶ୍ୱେଶ୍ୱରୟାଙ୍କର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ଯୋଗାଇ ଦେବାକୁ ପ୍ରତିଶ୍ରୁତି ବଦ୍ଧ ହେଲେ ।

ନବେବର୍ଷ ବୟସ୍କ ବିଶ୍ୱେଶ୍ୱରୟା ଏହି ଆହ୍ୱାନକୁ ଗ୍ରହଣ କଲେ ଏବଂ କେବଳ ତାଙ୍କୁ ସାହାଯ୍ୟ କରିବାକୁ କେତେକ ବିଜ୍ଞ ଲୋକମାନଙ୍କୁ ତାଙ୍କ ସାଥିରେ କର୍ମସ୍ଥଳୀକୁ ଯିବାକୁ ଅନୁରୋଧ କଲେ । ତାଙ୍କୁ ସହଯୋଗ କରିବା ପାଇଁ ଏକ କମିଟିରେ ଡ଼ି. ସି. ବଇଜଲଙ୍କୁ ସେକ୍ରେଟାରୀ ଏବଂ ବି. ବି. ବର୍ମା, ଭି. ପି. ଭଣ୍ଡାରକର ଓ ପି. ବି. ଆଡ଼ଭାନିଙ୍କୁ ସହଯୋଗୀ ରୂପେ ନିଆଗଲା । ଏହି ଅନୁସନ୍ଧାନ କାର୍ଯ୍ୟପାଇଁ ଗୋଟିଏ

ସ୍ୱତନ୍ତ୍ର ଟ୍ରେନରେ ୭ ଗୋଟି ବଗି ସହ କମିଟିକୁ ଯୋଗାଇ ଦିଆଗଲା । ରେଳବାଇ ଷ୍ଟିମର ସର୍ଭିସ ମଧ୍ୟ ଏହି କମିଟି ପାଇଁ ଯୋଗାଇ ଦେଇଥିଲେ । ନଦୀପଥ ଉପରେ ଆକାଶ ମାର୍ଗରୁ ପୋଲ ପାଇଁ ସ୍ଥାନ ନିର୍ବାଚନ କରିବା ପାଇଁ ଗୋଟିଏ ଉଡ଼ାଜାହାଜ ଯୋଗାଇ ଦେଇଥିଲେ ।

୧୯୫୨ ମସିହା ମାର୍ଚ୍ଚ ୨୭ ତାରିଖରେ ସାର୍ ବିଶ୍ୱେଶ୍ୱରୟା ଓ କମିଟିର ସଦସ୍ୟମାନେ ନୂଆଦିଲ୍ଲୀଠାରେ ମିଳିତ ହୋଇ ରେଳବାଇ ମନ୍ତ୍ରୀ, ରେଲୱେ ବୋର୍ଡର ଚେୟାରମ୍ୟାନ, ଇଞ୍ଜିନିୟର ଏବଂ ଭାରତ ସରକାରଙ୍କର ଜାତୀୟରାଜପଥର କର୍ମକର୍ତ୍ତାଙ୍କ ସହିତ ଆଲୋଚନା କରିଥିଲେ । ଉଡାଜାହାଜରେ ଗଙ୍ଗାନଦୀ ଉପର ଦେଇ ଜଙ୍ଗୀପୁରଠାରୁ ପାଟଣାର ୩୬ କିଲୋମିଟର ପର୍ଯ୍ୟନ୍ତ ଆକାଶ ମାର୍ଗରୁ ସର୍ଭେ କରିଥିଲେ । ପାଇଲଟ ପାଖ ସମ୍ମୁଖ ସିଟ୍‌ରେ ସାର୍ ବିଶ୍ୱେଶ୍ୱରୟା ବସି ଗଙ୍ଗାର ଶଯ୍ୟାକୁ ଅନୁଧ୍ୟାନ କରୁଥିଲେ । କଲିକତା ଠାରୁ କାଠମାଣ୍ଡୁ ପର୍ଯ୍ୟନ୍ତ ଟ୍ରେନ୍ କିମ୍ବା ଷ୍ଟିମର ବା ମୋଟରରେ ଯାଇ ପୂର୍ବନିର୍ଦ୍ଧାରିତ ସ୍ଥାନମାନ ପରିଦର୍ଶନ କରିଥିଲେ । ସେନାବିଭାଗର ଜେନେରାଲ ଥିମାୟାଙ୍କ ସଙ୍ଗେ ଦିଲ୍ଲୀ ଠାରେ ଯୁଦ୍ଧ ପରିପ୍ରେକ୍ଷୀରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ବିଷୟରେ ବୁଝିଥିଲେ ।

ବିହାରର ଗଭର୍ଣ୍ଣର ଡ଼ଃ ଏମ୍. ଏସ୍. ଆନେ ସାର୍ ବିଶ୍ୱେଶ୍ୱରୟାଙ୍କ ପାଖକୁ ପତ୍ରଲେଖି ତାଙ୍କୁ ରାଜଭବନରେ ରହିବା ପାଇଁ ଅନୁରୋଧ କଲେ । ସାର୍ ବିଶ୍ୱେଶ୍ୱରୟା ପାଟଣାଠାରେ ଅନ୍ୟ ସହଯୋଗୀମାନଙ୍କ ସହ ରେଳଡ଼ବାରେ ରହି କାର୍ଯ୍ୟ ସମ୍ପାଦନ କରିବା ପାଇଁ ଅଧିକ ପସନ୍ଦ କରନ୍ତି ବୋଲି କହିଥିଲେ । ସେଥିପାଇଁ ଡଃ ଆନେ ରାଷ୍ଟ୍ରପତିଙ୍କ ପାଖକୁ ସାର୍ ବିଶ୍ୱେଶ୍ୱରୟାଙ୍କର ପ୍ରଶଂସା କରିକହିଥିଲେ : "'Duty before comfort' was the ideal and who would not foresake colleagues for the shake of comfort." ବିଶ୍ୱେଶ୍ୱରୟା ମୋକାମେହ ସବୁଠାରୁ ଉତ୍କୃଷ୍ଟ ସ୍ଥାନ ବୋଲି ସୁପାରିଶ କରିଥିଲେ । ଭାରତ ସରକାରଙ୍କର କେନ୍ଦ୍ର କ୍ୟାବିନେଟ ଏହି ପ୍ରସ୍ତାବକୁ ଗ୍ରହଣ କରିଥିଲେ । ନିର୍ମାଣ କାର୍ଯ୍ୟ ପ୍ରକୃତ ପକ୍ଷେ ୧୯୫୩ ମସିହା ସେପ୍‌ଟେମ୍ବରରୁ ଆରମ୍ଭ ହୋଇ ମାର୍ଚ୍ଚ ୧୯୫୯ ମସିହାରେ ଶେଷ ହୋଇଥିଲା । ସେଥିରେ ମୋଟ ୧୩୯୦ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥିଲା ।

ଥରେ ଜଣେ ଡେପୁଟି ଅଡ଼ିଟର ଜେନେରାଲ କହିଥିଲେ ଯେ ସରକାରୀ ଅର୍ଥକୁ ବ୍ୟୟ କଲାବେଳେ ବହୁତ ସତର୍କତାର ସହିତ ବ୍ୟୟ କରିବା ଉଚିତ । ଯଦି ଆବଶ୍ୟକ ହୁଏ ନିୟମ ବହିର୍ଭୂତ ବ୍ୟୟକରାଯାଇପାରେ କିନ୍ତୁ ସେଥିରେ ନିଜର କାର୍ଯ୍ୟପାଇଁ ନିଜର ଅର୍ଥବ୍ୟୟ କରି ସେ କାର୍ଯ୍ୟଟି ସମ୍ପୂର୍ଣ୍ଣ କରିବାର ଉଦ୍ଦୀପନା ଥିବା ଦରକାର । ସାର୍ ବିଶ୍ୱେଶ୍ୱରାୟାଙ୍କ କ୍ଷେତ୍ରରେ ସେହିପରି ହୋଇଥିଲା । ତାଙ୍କ ବିରୁଦ୍ଧରେ ଅନେକ ଦରଖାସ୍ତ ଆସିଥିଲା । ୧୯୨୭ ମସିହା ଅଗଷ୍ଟ ମାସରେ

ମହାତ୍ମାଗାନ୍ଧୀ ତାଙ୍କର ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ମହୀଶୂର ଆସିଥାନ୍ତି । ହାଇକୋର୍ଟର ଜଣେ ଅବସରପ୍ରାପ୍ତ ବିଚାରପତି ଟି. ପରମଶିବ ଆୟାର ବିଶ୍ୱେଶ୍ୱରୟାଙ୍କ ବିରୁଦ୍ଧରେ ଅନେକ ଗୁଡ଼ିଏ ପେଟିସନ ଓ ସମ୍ବାଦପତ୍ରର କଟା ଅଂଶ ମହାତ୍ମାଗାନ୍ଧୀଙ୍କୁ ଦେଲେ । ସେଥିରେ ଭଦ୍ରାବତୀ ଆଇରନ ଓ୍ୱାର୍କସ୍, ଚନ୍ଦନ ତେଲ କାରଖାନା, କନ୍ନାମ୍ବଡ଼ୀ ଡ୍ୟାମ୍ (କୃଷ୍ଣରାଜସାଗର) ଏବଂ ଅନ୍ୟାନ୍ୟ ପ୍ରକଳ୍ପଗୁଡ଼ିକରେ କିପରି ଅର୍ଥ ଅପବ୍ୟୟ କରାଯାଇଛି ତାହା ଦର୍ଶାଯାଇଥିଲା ।

ମହାତ୍ମାଗାନ୍ଧୀ କେତେଜଣ ବିଶିଷ୍ଟ ଲୋକଙ୍କୁ ନେଇ ଭଦ୍ରାବତୀ ଏବଂ କୃଷ୍ଣରାଜସାଗର ଡ୍ୟାମ୍ ପରିଦର୍ଶନ କରିଥିଲେ । ବିଭିନ୍ନ ଶ୍ରେଣୀର ଜନସାଧାରଣ ଓ ଅଫିସରଙ୍କଠାରୁ ଅନେକ ତଥ୍ୟ ଏହି ପ୍ରକଳ୍ପ ବିଷୟରେ ସଂଗ୍ରହ କଲେ । ଏହି ପ୍ରକଳ୍ପଗୁଡ଼ିକ ବିଷୟରେ ଆଲୋଚନା କଲେ । ଏହି ପ୍ରକଳ୍ପଗୁଡ଼ିକୁ ଦେଖି ମହାତ୍ମାଗାନ୍ଧୀ ଦେଶଭକ୍ତ ଓ ବିଶିଷ୍ଟ ଯନ୍ତ୍ରୀ ସାର୍ ବିଶ୍ୱେଶ୍ୱରୟାଙ୍କର ଜ୍ଞାନ ଓ ନିଷ୍ଠାପ୍ରତି ସମ୍ମାନ ପ୍ରଦର୍ଶନ କଲେ । ମହୀଶୂରବାସୀଙ୍କ ପାଇଁ ସେ ତାଙ୍କର ସମୟ, ଶକ୍ତି ସାମର୍ଥ୍ୟ ଦେଇ ଯେଉଁ ଆଧୁନିକ କୋଣାର୍କ ନିର୍ମାଣ କରିଛନ୍ତି ତାକୁ ମହୀଶୂରର ଜନସାଧାରଣ କଦାପି ଭୁଲି ପାରିବେ ନାହିଁ । ମହାତ୍ମାଗାନ୍ଧୀ କହିଥିଲେ, "Even if the Bhadravati plant was scrapped tomorrow, the money that had been spent on it so far was not a waste, as it had given people the confidence to tackle new industry and to face any situation that might arise. His creations have enhanced the reputation of our country. We have to be proud of these achievements"

ସେ କହିଥିଲେ, "ଭଦ୍ରାବତୀ କାରଖାନା ବନ୍ଦ ହୋଇପାରେ କିନ୍ତୁ ସେଥିରେ ଯେଉଁ ଅର୍ଥ ବ୍ୟୟ ହୋଇଛି ତାହା ଅପବ୍ୟୟ ନୁହେଁ । ନୂତନ କାରଖାନା ବା ନୂତନ ଶିଳ୍ପର ପରିଚାଳନା ପାଇଁ ଆମ ଦେଶର ନାଗରିକଙ୍କ ମନରେ ଭଦ୍ରାବତୀ ବିଶ୍ୱାସ ଜନ୍ମାଇ ପାରିଛି ଯେ କୌଣସି ପରିସ୍ଥିତିର ମୁକାବିଲା କରିବା ପାଇଁ । ତାଙ୍କର ସୃଷ୍ଟି ଆମ ଦେଶର ଗୌରବ ବୃଦ୍ଧି କରିଛି । ଆମେ ସେଥିରେ ଗର୍ବ କରିବା ଉଚିତ ।" ସେ କୃଷ୍ଣରାଜସାଗର ପ୍ରକଳ୍ପଟି ଦେଖି ଆମ ଦେଶରେ ଯେ ଏପରି ଏକ ଡ୍ୟାମ୍

ନିର୍ମିତ ହୋଇପାରିଛି, ସେଥିରେ ସେ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । ଏହି ଡ୍ୟାମ୍‌ଟି ପୃଥିବୀରେ ଦ୍ୱିତୀୟ ବୃହତ୍ତମ ଡ୍ୟାମ୍ ବୋଲି ସେ ଜାଣିପାରିଥିଲେ । ଗାନ୍ଧିଜୀ ସାର୍ ବିଶ୍ୱେଶ୍ୱରୟାଙ୍କର ଇଞ୍ଜିନିୟରିଂ କୌଶଳର ଭୂୟସୀ ପ୍ରଶଂସା କରିଥିଲେ । ଦେଶର ବିକାଶ କ୍ଷେତ୍ରରେ ସାର୍ ବିଶ୍ୱେଶ୍ୱରୟାଙ୍କ ଅବଦାନ ତାଙ୍କୁ ଚିରସ୍ମରଣୀୟ କରି ରଖିବ ।

ବିଶ୍ୱେଶ୍ୱରୟାଙ୍କ ନିଷ୍ଠାପର ଗୁଣ ଓ ଦେଶପ୍ରତି ବିଶେଷ ଅବଦାନ ପାଇଁ ଭାରତ ସରକାର ୧୯୫୫ ମସିହାରେ ତାଙ୍କୁ 'ଭାରତ ରତ୍ନ' ସମ୍ମାନରେ ସମ୍ମାନିତ କଲେ । ତାଙ୍କର ଜନ୍ମ ଶତବାର୍ଷିକୀରେ ଭାରତ ସରକାର ତାଙ୍କୁ ଅଭିନନ୍ଦିତ କରିବା ପାଇଁ ତାଙ୍କର ଚିତ୍ର ସହ ଏକ ଡାକ ଟିକେଟ ପ୍ରଚଳନ କରିଥିଲେ ।

—*—

ସପ୍ତଦଶ ପରିଚ୍ଛେଦ :

# ବିଶ୍ୱେଶ୍ୱରାୟା : ମଣିଷପରି ମଣିଷଟିଏ–

୧୯୪୭ ମସିହାରେ ମହାତ୍ମାଗାନ୍ଧୀ ଦିଲ୍ଲୀର 'ବିର୍ଲା ହାଉସ'ରେ ଅବସ୍ଥାନ କରୁଥାନ୍ତି । ମହାତ୍ମାଗାନ୍ଧୀଙ୍କୁ ସାକ୍ଷାତ କରିବା ପାଇଁ ସାର୍ ବିଶ୍ୱେଶ୍ୱରୟା ଖଣ୍ଡେ 'ଭିଜିଟିଂ କାର୍ଡ' ପଠାଇଲେ । ମହାତ୍ମାଗାନ୍ଧୀ ସେତେବେଳେ ରଜାରଜୁଡ଼ାକାଳର ଶାସକ ମଣ୍ଡଳୀଙ୍କ ଗହଣରେ ଏକ ଗାଲିଚା ଉପରେ ବସିଥିଲେ । ଗାନ୍ଧିଜୀ ଗାଲିଚା ଉପରୁ ଉଠିପଡ଼ି ସାର୍ ବିଶ୍ୱେଶ୍ୱରୟାଙ୍କ ସଙ୍ଗେ କରମର୍ଦ୍ଦନ କଲେ । ଗାନ୍ଧିଜୀ ବିଶ୍ୱେଶ୍ୱରୟାଙ୍କ ପାଇଁ ଏକ ଚୌକି ମଗାଇ କହିଲେ "ସେ ଚୌକିରେ ବସିଲେ ଅଧିକ ଆରାମ ଅନୁଭବ କରିବେ ।" କିଛି ସମୟ ଆଳାପ ଆଲୋଚନା ପରେ ଗାନ୍ଧିଜୀ ପୁନରାୟ ଉଠିପଡ଼ି ସାର୍ ବିଶ୍ୱେଶ୍ୱରୟାଙ୍କୁ ବିଦାୟ ସମ୍ବର୍ଦ୍ଧନା ଜଣାଇଲେ । ଏହା ଥିଲା ଭାରତର ଦୁଇ ବିଶିଷ୍ଟ ଓ ଶ୍ରେଷ୍ଠ ବ୍ୟକ୍ତିଙ୍କ ମଧ୍ୟରେ ଶେଷ ସାକ୍ଷାତ ।

ମହାତ୍ମାଗାନ୍ଧୀଙ୍କର ମାପକାଠି ହେଲା 'ଗ୍ରାମାଞ୍ଚଳର ଗରିବ ଲୋକମାନେ ଯାହା ପିନ୍ଧନ୍ତି ତା'ଠାରୁ ଅଧିକ କିଛି ସେ ପିନ୍ଧିବାକୁ ଚାହାନ୍ତି ନାହିଁ ।' ଆଣ୍ଠୁ ଲୁଚି ନଥିବା ଖଣ୍ଡିଏ ଧୋତି ପିନ୍ଧିଥିବାରୁ ବିଲାତରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ତାଙ୍କୁ 'ହାଫ୍ ନେକେଡ୍ ଫକୀର' ବା ଅର୍ଦ୍ଧ ଲଙ୍ଗଳା ଫକୀର ବୋଲି କହିଥିଲେ । ସାର୍ ବିଶ୍ୱେଶ୍ୱରୟା ଥିଲେ କିନ୍ତୁ ଠିକ୍ ଓଲଟା । ସେ ସର୍ବଦା ସାହେବ କାଇଦାରେ ପୋଷାକ ପରିଧାନ କରୁଥିଲେ । ସେଥିପାଇଁ ଭାରତର ଶେଷ ଗଭର୍ଣ୍ଣର ସି. ରାଜଗୋପାଳାଚାରୀ ତାଙ୍କୁ ଥଟ୍ଟାରେ କହୁଥିଲେ ଯେ ବିଶ୍ୱେଶ୍ୱରୟା ଇସ୍ତ୍ରୀକରା ବସ୍ତ୍ର ପରିଧାନ କରୁଥିଲେ ନା ବସ୍ତ୍ର ପିନ୍ଧିସାରିଲା ପରେ ସେଥିରେ ଇସ୍ତ୍ରୀ ମରାଯାଉଥିଲା । ସେ ସଦା ସର୍ବଦା ମୁଣ୍ଡରେ ଏକ ପଗଡ଼ି ପିନ୍ଧିବାକୁ ପସନ୍ଦ କରୁଥିଲେ ।

ସ୍ୱଦେଶୀ ଚିନ୍ତାଧାରା ଉଭୟ ମହାତ୍ମାଗାନ୍ଧୀ ଓ ସାର୍ ବିଶ୍ୱେଶ୍ୱରୟାଙ୍କର ଥିଲେ ମଧ୍ୟ ସେଥିରେ ଅନେକ ତଫାତ୍ ଥିଲା । ଗାନ୍ଧିଜୀ କେବଳ ଘରୋଇ ଦେଶୀ ଜିନିଷ ବ୍ୟବହାର କରିବାକୁ କହୁଥିଲେ ଏବଂ ବିଦେଶୀ ପଦାର୍ଥ ସମ୍ପୂର୍ଣ୍ଣ ରୂପେ ବର୍ଜନ କରିବା ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ । ଏପରିକି ପିନ୍, ପେନସିଲ, କଲମ, କାଗଜ ପ୍ରଭୃତି ଆମ ଦେଶରେ ନିର୍ମିତ ହେଉ ନଥିବାରୁ ତାକୁ ମଧ୍ୟ ବର୍ଜନ କରିବାକୁ କହୁଥିଲେ । ସେଥିପାଇଁ ତାଙ୍କୁ ଯେତେ କଷ୍ଟ ସହିବାକୁ ପଡ଼ିଲେ ମଧ୍ୟ ସହୁଥିଲେ । ବିଶ୍ୱେଶ୍ୱରୟା ଉଚ୍ଚ ମାନର ପେନସିଲ, ପିନ୍, କଲମ, କାଗଜ ଆମ ଦେଶରେ କିପରି ଉତ୍ପାଦିତ ହୋଇପାରିବ ତାର ଚିନ୍ତା କରୁଥିଲେ । ସିମେଣ୍ଟ

ବିଦେଶରେ ଉତ୍ପାଦିତ ହେଉଥିବାରୁ ତା ପରିବର୍ତ୍ତେ ଚୂନ ଓ ସୁରକିରେ ନିର୍ମାଣ କାର୍ଯ୍ୟ କରିବା ପାଇଁ ଅଧିକ ପସନ୍ଦ କରୁଥିଲେ ।

ଗାନ୍ଧିଜୀ ଗ୍ରାମ୍ୟଶିଳ୍ପ ଓ ହସ୍ତଶିଳ୍ପ ଉପରେ ବିଶେଷ ଜୋର ଦେଉଥିଲେ । ଏହି ଶିଳ୍ପର ମୂଳଧନ ଗରିବ ଲୋକମାନେ ସହଜରେ ଯେପରି ଯୋଗାଡ଼ କରି ପାରିବେ, ସେଥିପ୍ରତି ସେ ଧ୍ୟାନ ଦେଉଥିଲେ । ବିଶ୍ୱେଶ୍ୱରୟା କହୁଥିଲେ, "Economic progress can not be achieved only by means of village industries and handicraft. Great attention is necessary to be bestowed on basic industries, without which other industries cannot be developed."

"କେବଳ ଗ୍ରାମ୍ୟଶିଳ୍ପ ଓ ହସ୍ତଶିଳ୍ପ ଦ୍ୱାରା ଅର୍ଥନୈତିକ ପ୍ରଗତି ହାସଲ ହୋଇପାରିବ ନାହିଁ । ବଡ଼ ବଡ଼ ମୌଳିକ ଶିଳ୍ପପାଇଁ ଅଧିକ ଧ୍ୟାନ ଦିଆଯିବା ଆବଶ୍ୟକ, ତା ନହେଲେ ଅନ୍ୟ ଶିଳ୍ପ ଉଠେଇ ପାରିବ ନାହିଁ ।"

ବିଶ୍ୱେଶ୍ୱରୟା ଆମ ଦେଶରେ କିପରି ଶିଳ୍ପ କାରଖାନା ଗଢି ଉଠିବ ସେଥିପାଇଁ ବିଭିନ୍ନ ଦେଶ ଗସ୍ତ କରୁଥିଲେ । ଥରେ ସେ ଭାରତର ଏକ ପ୍ରତିନିଧି ମଣ୍ଡଳର ନେତୃତ୍ୱ ନେଇ ଆମେରିକା ଯୁକ୍ତରାଷ୍ଟ୍ରର ବିଭିନ୍ନ ଶିଳ୍ପ ଯୋଜନା ଅନୁଧ୍ୟାନ କରିବା ପାଇଁ ଆମେରିକା ଯାଇଥିଲେ । ସେଠାରେ ଗୋଟିଏ କାରଖାନା ବୁଲି ଦେଖୁଥିଲା ବେଳେ ଜଣେ କର୍ମଚାରୀ ଭାରତୀୟ ପ୍ରତିନିଧିଙ୍କୁ କହିଲେ "ଏହି କାରଖାନାର ଯନ୍ତ୍ରପାତି ଗୁଡ଼ିକର କାର୍ଯ୍ୟକାରିତା ବିଷୟରେ ଯଦି ଦେଖିବାକୁ ଚାହାନ୍ତି ତେବେ ଏହି ୨୩ ମିଟର ଉଚ୍ଚ ସିଡ଼ିରେ ଚଢ଼ି ଯନ୍ତ୍ରପାତିର କାର୍ଯ୍ୟ ଦେଖନ୍ତୁ ।" ଭାରତୀୟ ବିଶେଷଜ୍ଞଙ୍କ ମଧ୍ୟରୁ ଅନେକ ସିଡ଼ି ଚଢ଼ିବାକୁ ସାହସ କଲେ ନାହିଁ । କେତେ ଜଣ କିଛି ପାହାଚ ଚଢ଼ି ପୁଣି ଓହ୍ଲାଇ ଆସିଲେ । କିନ୍ତୁ ୮୫ ବର୍ଷ ବୟସ୍କ ବିଶ୍ୱେଶ୍ୱରୟା ଧୀରେ ଧୀରେ ଉପରକୁ ଚଢ଼ିଲେ । ଏହା ଦେଖି ଆମେରିକୀୟ କର୍ମକର୍ତ୍ତା ମଧ୍ୟ ବିସ୍ମିତ ହୋଇଗଲେ । ସେ ଯନ୍ତ୍ରପାତିଗୁଡ଼ିକ କିପରି କାର୍ଯ୍ୟକରୁଛି ପ୍ରତ୍ୟକ୍ଷ ଭାବେ ଲକ୍ଷ୍ୟକରି ନୋଟ୍ ବହିରେ ଆବଶ୍ୟକୀୟ ତଥ୍ୟ ସବୁ ସେଠାରେ ଲେଖିଲେ । ଏହା ଥିଲା ସାର୍ ବିଶ୍ୱେଶ୍ୱରୟାଙ୍କ ବିଶେଷତ୍ୱ । ନୂତନ ଜିନିଷ ଶିକ୍ଷାକରିବା ତାଙ୍କ ଜୀବନର ଥିଲା ଅଭିଳାଷ ।

ବିଶ୍ୱେଶ୍ୱରୟା ବିଭିନ୍ନ ସରକାରଙ୍କ ଅଧୀନରେ ଚାକିରି କଲେ ମଧ୍ୟ ଅତି ସ୍ୱାଧୀନଚେତା ଥିଲେ । ମହୀଶୂରରେ ଦଶହରା ପର୍ବ ଏକ ଜାତୀୟପର୍ବ । ମହୀଶୂର ମହାରାଜା ଦଶହରା ପର୍ବକୁ ଅତି ଆଡ଼ମ୍ବର ସହ ପାଳନ କରି ବିଶିଷ୍ଟ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରୁଥିଲେ । ସେତେବେଳେ ଇଂରେଜମାନେ ଭାରତର ପ୍ରଭୁ ଏବଂ ସେହିପରି

ଭବରେ ସବୁ କ୍ଷେତ୍ରରେ ସେମାନେ ସମ୍ମାନିତ ହେବାକୁ ଚାହୁଁଥିଲେ । ଦଶହରା ଉତ୍ସବରେ ଇଂରେଜମାନଙ୍କ ପାଇଁ କେବଳ ଆରାମଦାୟକ ଚୌକିର ବ୍ୟବସ୍ଥା କରାଯାଉଥିଲା, ଏବଂ ଅନ୍ୟ ଭାରତୀୟ ଅତିଥିମାନେ ଗାଲିଚାରେ ବସୁଥିଲେ । ୧୯୧୦ ମସିହାରେ ବିଶ୍ୱେଶ୍ୱରାୟା ଚିଫ୍ ଇଂଜିନିୟର ଥିବା ସମୟରେ ପ୍ରଥମ ଥର ପାଇଁ ରାଜଦରବାରରେ ଦଶହରା ଉତ୍ସବରେ ଯୋଗଦେଲେ । ଇଂରେଜ ଓ ଭାରତୀୟମାନଙ୍କ ବସିବାରେ ପାର୍ଥକ୍ୟ ଦେଖି ସେ ମନରେ ବିଶେଷ ଆଘାତ ପାଇଲେ ।

ପରବର୍ଷ ଦଶହରା ଉତ୍ସବରେ ବିଶ୍ୱେଶ୍ୱରାୟା ଆଉ ଯୋଗଦେଲେ ନାହିଁ । ଏହି ବିଷୟରେ ପ୍ରଶ୍ନ ହେବାରୁ ସେ କହିଲେ, ଜଣେ ଭାରତୀୟ ମହାରାଜା ଇଂରେଜଙ୍କୁ ଓ ଭାରତୀୟଙ୍କୁ ପୃଥକ ଭାବରେ ବ୍ୟବହାର କରିବା ଆଦୌ ଠିକ୍ ହେଉନାହିଁ । ମହାରାଜା ବିଶ୍ୱେଶ୍ୱରାୟାଙ୍କ ପ୍ରତିକ୍ରିୟା ଜାଣିପାରି ତତ୍ପର ବର୍ଷ ଦଶହରା ଉତ୍ସବରେ ଇଂରେଜ ଓ ଭାରତୀୟଙ୍କ ପାଇଁ ଚୌକିର ବ୍ୟବସ୍ଥା କଲେ । ସେହି ବର୍ଷ ପୁନରାୟ ବିଶ୍ୱେଶ୍ୱରାୟା ଉତ୍ସବରେ ଯୋଗ ଦେଲେ ।

ବିଶ୍ୱେଶ୍ୱରାୟା ମହୀଶୂରର ଦେୱାନ ଥିବା ସମୟରେ ଜଣେ ବ୍ରିଟିଶ ଅଫିସର ତାଙ୍କୁ ପତ୍ର ଲେଖିଥିଲେ ଯେ ରାଜଦରବାରରେ ତାଙ୍କୁ ଯେଉଁ ଚୌକି ଦିଆଯାଇଅଛି ତାହା ଅତ୍ୟଧିକ ଉଚ୍ଚ ଥିବାରୁ ତାଙ୍କର ଦୁଇପାଦ ରଖିବାକୁ ଅସୁବିଧା ହେଉଛି । ତାଙ୍କର ପାଦ ରଖିବା ପାଇଁ ଗଦିଦିଆ କ୍ଷୁଦ୍ର ଷ୍ଟୁଲର ବ୍ୟବସ୍ଥା ହେବା ନିତାନ୍ତ ଜରୁରି । ସେତେବେଳେ ମହାରାଜାଙ୍କ ପାଇଁ କେବଳ ପାଦାସନର ବ୍ୟବସ୍ଥା ହେଉଥିଲା କିନ୍ତୁ ଅନ୍ୟ କାହାରି ପାଇଁ ଏହିପରି ବ୍ୟବସ୍ଥା ନଥିଲା । ବିଶ୍ୱେଶ୍ୱରାୟା ବୁଝିଲେ ଯେ ମହାରାଜାଙ୍କ ଉପରେ ବ୍ରିଟିଶମାନଙ୍କର ପ୍ରଭୁତ୍ୱ ଦେଖାଇବା ପାଇଁ ବ୍ରିଟିଶ ଅଫିସରମାନେ ପାଦାସନର ବ୍ୟବସ୍ଥା ପାଇଁ ଅନୁରୋଧ କରିଛନ୍ତି । ସେ ଚୌକିଗୁଡ଼ିକର ଗୋଡ଼ଗୁଡ଼ିକୁ କାଟି ଖ୍ରେଟ କରିଦେବା ପାଇଁ ଆଦେଶ ଦେଲେ ଏବଂ ବିଶ୍ୱେଶ୍ୱରାୟା ସେହି ବିଷୟ ଲିଖିତ ଆକାରରେ ବ୍ରିଟିଶ ଅଫିସରମାନଙ୍କୁ ଜଣାଇଦେଲେ । ତାଙ୍କର ଏହି ସ୍ୱଳ୍ପ ଘଟଣାରୁ ସାର ବିଶ୍ୱେଶ୍ୱରାୟାଙ୍କ ସ୍ୱାଭିମାନ ଓ ତାଙ୍କର ଦେଶପ୍ରୀତିର ପରିଚୟ ମିଳେ ।

ସାର୍ ବିଶ୍ୱେଶ୍ୱରାୟାଙ୍କ ବିଷୟରେ ଭି. ଏସ୍. ନାରାୟଣ ରାଓ ଲେଖିଛନ୍ତି, "He was by birth poor, by tradition a gentleman, by behaviour self controlled and by nature virtuous. Always helpful. he had no enemies. By occupation an engineer, by circumstances a Dewan, mentally a scientist and by efforts an industrialist."

"ସେ ଗରିବ ଘରେ ଜନ୍ମ ହେଲେ ମଧ୍ୟ ଭଦ୍ରଲୋକ, ଆତ୍ମସଂଯମୀ ଓ ପୁଣ୍ୟାତ୍ମା, ସଦା ପରୋପକାରୀ ଓ ଅଜାତ ଶତ୍ରୁ । ତାଙ୍କର ବୃତ୍ତି ଇଂଜିନିୟରିଂ, ଅବସ୍ଥା

ଚକ୍ରରେ ଜଣେ ଦେଓ୍ୱାନ, ସେ ଜଣେ ବୈଜ୍ଞାନିକ ଏବଂ ତାଙ୍କର କର୍ମବଳରେ ସେ ଜଣେ ଶିଳ୍ପପତି ।''

ସାର୍ ବିଶ୍ୱେଶ୍ୱରାୟା ଜଣେ ଖାଣ୍ଟି ଶାକାହାରୀ । ସେ କେବେହେଲେ ଧୂମ୍ରପାନ କିମ୍ବା ମାଦକଦ୍ରବ୍ୟ ସେବନ କରିନାହାନ୍ତି । ସେ ଅନେକ ଥର ବିଦେଶ ଭ୍ରମଣରେ ଯାଇଥିଲେ ମଧ୍ୟ ତାଙ୍କର ଆତ୍ମସଂଯମ ବଳରେ ମଦ ମାଂସ ଓ ଧୂମ୍ରପାନ ଠାରୁ ଦୂରରେ ରହି ପାରିଥିଲେ । ତାଙ୍କର ସୁନ୍ଦର ସ୍ୱାସ୍ଥ୍ୟ ସହ ଦୀର୍ଘ ଜୀବନର ଚାବି କାଠି ହେଉଛି ଆତ୍ମ ସଂଯମ, ଖାଇବା ଓ ଶୋଇବାରେ ସଂଯମତା ଏବଂ ବ୍ୟାୟାମ । ସେ ପ୍ରତିଦିନ ସକାଳ ୬ଟାରେ ଉଠି ଠିକ୍ ରାତ୍ର ୧୦ଟାରେ ଶୟନ କରନ୍ତି । ସେ ପ୍ରାତଃ ଭ୍ରମଣକୁ କେବେହେଲେ ପାଶୋରି ନାହାନ୍ତି । ତାଙ୍କର ଦୀର୍ଘପଥ ଭ୍ରମଣ ପରିଦର୍ଶକମାନଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । ତାଙ୍କର ପ୍ରାତଃଭ୍ରମଣ ସମୟରେ ଜଣେ ଚାକର ଏବଂ ତାଙ୍କର ନିଜ ମୋଟର କାର ତାଙ୍କ ପଛେ ପଛେ ଯାଉଥାଏ । ସେ ଯେତେବେଳେ କ୍ଲାନ୍ତି ଅନୁଭବ କରନ୍ତି ସେଠାରୁ ସେ ମୋଟର କାରରେ ଫେରି ଆସନ୍ତି । ବେଳେବେଳେ ମହୀଶୂରର ଦେଓ୍ୱାନ ସାର୍ ମୀର୍ଜା ଇସମାଇଲ ତାଙ୍କ ସହ ଭ୍ରମଣକାରୀ ରୂପେ ସଙ୍ଗହୋଇ ପ୍ରାତଃଭ୍ରମଣରେ ଯାଉଥିଲେ ।

ବିଶ୍ୱେଶ୍ୱରୟା ସକାଳ ଜଳଖିଆ ଓ ସାମାନ୍ୟ କଫି ଖାଇଲାପରେ ପ୍ରତିଦିନ ସକାଳ ୭ଟାରେ ତାଙ୍କ ଅଫିସ କାର୍ଯ୍ୟ ଆରମ୍ଭ କରୁଥିଲେ । ସେ ୭ଟାରୁ ମଧ୍ୟାହ୍ନ ୧ଟା ପର୍ଯ୍ୟନ୍ତ ଅଫିସ ଟେବୁଲରେ ବସି କାର୍ଯ୍ୟ କରି ୧ଟା ଠାରୁ ଅପରାହ୍ନ ୩ଟା ପର୍ଯ୍ୟନ୍ତ ନିଜ ବାସଭବନକୁ ମଧ୍ୟାହ୍ନ ଭୋଜନ ପାଇଁ ଯାଇଥିଲେ । ପୁନରାୟ ଅପରାହ୍ନ ୩ଟାଠାରୁ ସନ୍ଧ୍ୟା ୮ଟା ପର୍ଯ୍ୟନ୍ତ ଅଫିସ କାର୍ଯ୍ୟ କରୁଥିଲେ । ସେ ତାଙ୍କର ଖାଦ୍ୟ ପରିମିତ ପରିମାଣରେ ଖାଉଥିଲେ । ସେଥିରେ ଚାମୁଚ ପରିମାଣର କମ୍ କିମ୍ବା ଅଧିକ ହେଉନଥିଲା । କୌଣସି ବିବାହ ଭୋଜିରେ ମଧ୍ୟ ଏଣ୍ଟୁଡେଣ୍ଟୁ କିଛି ଖାଉନଥିଲେ । ସେ ନିୟମିତ ଠିକ୍ ସମୟରେ ଖାଦ୍ୟ ଖାଉଥିଲେ । ସେ ମଧ୍ୟାହ୍ନ ଭୋଜନରେ ପାଉଁରୁଟି ଦୁଇସ୍ଲାଇସ୍ ଓ ଦୁଇଟି ଚପାତି ସହ ଶିଝା ପନିପରିବା, ସେଥିରେ କିଛି ମସଲା ପଡ଼ିନଥିବା ଖାଦ୍ୟ ଖାଉଥିଲେ । ରସମ୍ ଓ କପେ ଦହି, ପାଚିଲା କଦଳୀ ଓ ଶିଝା ସେଓ ମଧ୍ୟାହ୍ନ ଭୋଜନର ଦୈନିକ ଖାଦ୍ୟର ଏକ ଅଂଶ ଥିଲା । ସନ୍ଧ୍ୟା ସମୟରେ କଫି ସହିତ କିଛି ବିସ୍କୁଟ ବ୍ୟତୀତ ମିଲ୍ ସମୟର ବ୍ୟବଧାନ ମଧ୍ୟରେ ଅନ୍ୟକିଛି ଗ୍ରହଣ କରୁନଥିଲେ ।

ସାର୍ ବିଶ୍ୱେଶ୍ୱରୟା ମହୀଶୂର ରାଜ୍ୟର ଦେଓ୍ୱାନ ହେବାପରେ ଏହା ତାଙ୍କର ବ୍ୟକ୍ତିଗତ ସୁବିଧା ସୁଯୋଗ ପାଇଁ ନୁହେଁ ବରଂ ତାଙ୍କର ଏହି ନୂତନ ପଦବୀ ଜନସେବାର ଏକ ମାଧ୍ୟମ ବୋଲି ସେ ବିବେଚନା କରୁଥିଲେ । ତାଙ୍କ ବିରୁଦ୍ଧରେ କେହି କେବେ ଅଭିଯୋଗ କରିନାହିଁ ଯେ ସେ ତାଙ୍କ ପଦମର୍ଯ୍ୟାଦାର ଅପବ୍ୟବହାର କରି ତାଙ୍କର କୌଣସି ବନ୍ଧୁ ବା ସମ୍ପର୍କୀୟମାନଙ୍କୁ ସୁବିଧା ସୁଯୋଗ ହାସଲ

କରାଇଛନ୍ତି । ତାଙ୍କ ମତରେ କୌଣସି ପଦ ପଦବୀ ପାଇଁ ବନ୍ଧୁ ବା ସମ୍ପର୍କୀୟ କହିଲେ ଅଯୋଗ୍ୟ ବିବେଚିତ ହେଉଥିଲା । ସେ ଦେଓ୍ୱାନ ପଦବୀ ଗ୍ରହଣ କରିବା ପୂର୍ବରୁ ତାଙ୍କର ସମସ୍ତ ବନ୍ଧୁ ଓ ସମ୍ପର୍କୀୟମାନଙ୍କ ପାଇଁ ଏକ ଭୋଜିର ଆୟୋଜନ କରିଥିଲେ । ଭୋଜିପରେ ସମସ୍ତ ବନ୍ଧୁମାନଙ୍କୁ କହିଲେ ଯେ ସେ ଏକ ସର୍ତ୍ତରେ ଦେଓ୍ୱାନ ପଦବୀ ଗ୍ରହଣ କରିବେ : ତାହା ହେଲା କୌଣସି ବନ୍ଧୁବାନ୍ଧବ ନିଜର ନିଯୁକ୍ତି କିମ୍ବା ଅନ୍ୟାନ୍ୟ ସୁବିଧା ସୁଯୋଗ ପାଇଁ ତାଙ୍କୁ କେବେ ହେଲେ କିଛି କହିବେ ନାହିଁ । ସେ ତାଙ୍କ ଦରମାର କିଛି ଅଂଶ ନିଜେ ରଖି ବାକୀତକ ଅଭାବୀ ସମ୍ପର୍କୀୟମାନଙ୍କୁ ମନି ଅର୍ଡର କରି ପଠାଇ ଦେଉଥିଲେ ।' ସେ ଖଣ୍ଡେ ଜମି ଜୀବନଭରି ଉତ୍ତମ କାମ କରିଥିବା ଚାକର ପାଇଁ ଉଇଲ କରି ଯାଇଥିଲେ ।

ସେ ନିଜ ପାଖରେ କୌଣସି ସମ୍ପର୍କୀୟଙ୍କୁ ରଖୁନଥିଲେ । ତାଙ୍କର ସ୍ତ୍ରୀଙ୍କ ମୃତ୍ୟୁପରେ ସେ ଏକୁଟିଆ ରହୁଥିଲେ । କେବଳ ତାଙ୍କର ଜଣେ ପୂଜାରୀ ଓ ଜଣେ ଚାକର ତାଙ୍କ ପାଖରେ ରହୁଥିଲେ । ତାଙ୍କର କୌଣସି ସନ୍ତାନସନ୍ତତି ନଥିଲେ । ତାଙ୍କର ବନ୍ଧୁମାନେ କହିବାରୁ ଶେଷରେ ତାଙ୍କର ଜଣେ ପୁତୁରା ଓ ପୁତୁରା ବୋହୂଙ୍କୁ ପାଖରେ ରଖୁଥିଲେ । ଥରେ ବିଶ୍ୱେଶ୍ୱରୟାଙ୍କ ମା ତାଙ୍କ ସଙ୍ଗେ ସରକାରୀ ଗାଡ଼ିରେ ଗାଁରୁ ଆସିଥିଲେ । ମା'ଙ୍କ ଦେହ ବିଶେଷ ଖରାପ ଥାଏ । ବିଶ୍ୱେଶ୍ୱରୟା ଡ୍ରାଇଭରକୁ ଡ଼ାକି କହିଲେ ମା'ଙ୍କୁ ନେଇ ନିଜ ଘର ଚମରଜପେଟଠାରେ ଛାଡ଼ି ଆସିବାକୁ । ପୁଅର ଗତିବିଧି ମା' ଆଗରୁ ଜାଣିଥିଲେ । ତେଣୁ ଡ୍ରାଇଭରକୁ ମନାକଲେ । ବଡକଷ୍ଟରେ ଗାଡ଼ିରୁ ଓହ୍ଲାଇ ପଡ଼ିଲେ ଏବଂ ନିଜ ଗାଡ଼ିନେଇ ଘରକୁ ଗଲେ । ବିଶ୍ୱେଶ୍ୱରୟା ବହୁତ ଖୁସିହୋଇ ମା'ଙ୍କୁ କହିଲେ, "ମା' ତୁମ୍ଭର ପୁଅ ଜଣେ ଦେଓ୍ୱାନ ହୋଇଥିବାରୁ ତୁମେ ଯେପରି ଗର୍ବ ଅନୁଭବ କରୁଛ, ମୋର ମା' ସରକାରୀ ଗାଡ଼ିରେ ନ ବସିବାକୁ କହିବାରେ ମୁଁ ତା'ଠାରୁ ଅଧିକ ଗର୍ବ ଅନୁଭବ କରୁଛି ।"

ସାର୍ ବିଶ୍ୱେଶ୍ୱରୟା କୌଣସି ନିର୍ମାଣ କାର୍ଯ୍ୟର ତଦାରଖ କରିବାକୁ ଯିବା ପୂର୍ବରୁ ନିଜର ରବର ଲାଗିଥିବା ପେନସିଲ ଓ ନୋଟବହି ସଙ୍ଗରେ ନେବାକୁ ଭୁଲୁ ନଥିଲେ । ତାଙ୍କ ମତରେ ଯେଉଁ ପେନସିଲରେ ରବର ଲାଗିନାହିଁ ତାକୁ ବ୍ୟବହାର କରିବା ଅନୁଚିତ । ପେନସିଲଟିକୁ କାଟି ମୁନିଆଁ କରିବା ସମୟରେ ତାଙ୍କର ଅଙ୍ଗୁଷ୍ଠି ଥରେ କଟିଗଲା । ସେ ସଙ୍ଗେ ସଙ୍ଗେ ସରକାରୀ ଡାକ୍ତରଙ୍କୁ ଡ଼କାଇ ବ୍ୟାଣ୍ଡେଜ କରାଇଲେ । ସେ ଘରକୁ ଫେରି ପଚିଶ ଟଙ୍କାର ଏକ ଚେକ୍ ଡ଼ାକ୍ତରଙ୍କ ପାଖକୁ ପଠାଇ ଦେଲେ । ଡ଼ାକ୍ତର ସେ ଚେକ୍‌ଟି ଧରି ନିଜେ ଦେଓ୍ୱାନଙ୍କ ପାଖକୁ ଆସିଲେ କହିଲେ, "ସାର୍, ମୁଁ ଜଣେ ସରକାରୀ କର୍ମଚାରୀ ଆଉ ଆପଣ ହେଉଛନ୍ତି ଶାସନର ସର୍ବୋଚ୍ଚ କର୍ତ୍ତା, ମୁଁ ଦରମା ନେଉଛି ଆପଣଙ୍କର ସେବା କରିବା ପାଇଁ । ମୁଁ ମୋର କର୍ତ୍ତବ୍ୟ କେବଳ ପାଳନ କରିଛି ଏବଂ ଆପଣଙ୍କର ଯତ୍‌କିଞ୍ଚିତ ସେବାକରି ମୁଁ ନିଜକୁ ଗୌରବ ମନେ କରୁଛି ।" ଗମ୍ଭୀର ହୋଇ ବିଶ୍ୱେଶ୍ୱରୟା କହିଲେ, "ପ୍ରତ୍ୟେକ ରୋଗୀଙ୍କୁ ସେବାକରି ତୁମେ ଯେପରି ଗୌରବାନ୍ୱିତ ହେଉଛ, ମୋକ୍ଷେତ୍ରରେ ମଧ୍ୟ

ସେହିପରି ହେବାକୁ ମୁଁ ଚ୍ହେଁ । ଯେଉଁମାନେ ଦେଇପାରିବେ ସେମାନେ ଦେବା ଉଚିତ । ତୁମେ ତୁମର କର୍ତ୍ତବ୍ୟପାଳନ କରିନ୍ତ ମୋ କର୍ତ୍ତବ୍ୟପାଳନ ପାଇଁ ମୋତେ ଛାଡ଼ିଦିଅ ।"

ଅବସର ନେବାପରେ ବିଶ୍ୱେଶ୍ୱରୟା ବାଙ୍ଗାଲୋର ହାଇ ଗ୍ରାଉଣ୍ଡସ ଅଞ୍ଚଳରେ ମାନେକାଭେଲୁ ମୁଦାଲିୟରଙ୍କ ଘରେ ଉଡାରେ ରହୁଥିଲେ । ପରେ ପରେ କବନ୍ ରୋଡ଼ର ଅନ୍ୟ ଏକ କ୍ଷୁଦ୍ର ବଙ୍ଗଳାକୁ ପରିବର୍ତ୍ତନ କରିଥିଲେ । ତାଙ୍କୁ ଜଣେ ପ୍ରଶ୍ନ କରିଥିଲେ "ଆପଣ ନିଜର ଘର ଖଣ୍ଡେ ନିର୍ମାଣ କରୁନାହାନ୍ତି କାହିଁକି ?"

ସେ କହିଲେ, "ମୁଁ ଆଉ କେତେ ଦିନ ବଞ୍ଚିବି ? ଜୀବନର ଶେଷ ମୁହୂର୍ତ୍ତରେ ଘର ଖଣ୍ଡେ ପୁଣି କଣ ହେବ ? ୧୯୫୨ ମସିହାରେ କେ. ସି. ରେଡ୍ଡି ଯେତେବେଳେ ମୁଖ୍ୟମନ୍ତ୍ରୀ ଥିଲେ ସେତେବେଳେ ଏକ ସରକାରୀ ବଙ୍ଗଳା ମାସିକ ୨୫୦ ଟଙ୍କା ଭଡ଼ାରେ ସାର୍ ବିଶ୍ୱେଶ୍ୱରୟାଙ୍କୁ ଯୋଗାଇ ଦେଲେ । ସେତେବେଳେ ତାଙ୍କର ଭାଇ ଏମ୍ ରାମଚନ୍ଦ୍ର ରାଓଙ୍କର ପୁତ୍ର ଏମ୍. ଆର. କୃଷ୍ଣମୂର୍ତ୍ତି ଓ ତାଙ୍କର ସ୍ତ୍ରୀ ପୁତ୍ର ତାଙ୍କ ସହିତ ରହିଥିଲେ ।

ଥରେ ବିଶ୍ୱେଶ୍ୱରୟାଙ୍କ ଗାଧୋଇବା ପାଇଁ ଜଳପାଣି ବହୁତ କମ୍ ଆସୁଥାଏ । ତାଙ୍କର ପୁତୁରା ଯାଇ ଜଳଯୋଗାଣ ବିଭାଗରେ ଅଭିଯୋଗ କଲେ କିନ୍ତୁ ବିଶ୍ୱେଶ୍ୱରୟା ତାଙ୍କୁ ସେଥିରୁ ନିବୃତ୍ତ ହେବାକୁ କହିଲେ । "ମୁଁ ବର୍ତ୍ତମାନ ସାଧାରଣ ଲୋକମାନଙ୍କ ମଧ୍ୟରୁ ଜଣେ ମୋ ପାଇଁ ବିଶେଷ ସୁବିଧା କାହିଁକି କରାଯିବ" ବୋଲି ସେ ପ୍ରଶ୍ନକଲେ ।

ବିଶ୍ୱେଶ୍ୱରୟାଙ୍କୁ ଯେତେବେଳେ ଏକଶତବର୍ଷ ପୂର୍ଣ୍ଣହେଲା, ସେତେବେଳେ ସେ ଦୁର୍ବଳ ହେଲେ ମଧ୍ୟ ତାଙ୍କର ଦୃଷ୍ଟିଶକ୍ତି ଉତ୍ତମଥିଲା । କିନ୍ତୁ ଶ୍ରବଣଶକ୍ତି କମି ଯାଇଥିଲା । ଚକ୍ଷୁ ବିଶେଷଜ୍ଞ ଡାଃ ଏମ୍. ସି. ମୋଦି ବିଶ୍ୱେଶ୍ୱରୟାଙ୍କ ଚକ୍ଷୁ ପରୀକ୍ଷା କରି ତାଙ୍କର ଆଖିରେ ପରଳ ପଡ଼ିଛି ବୋଲି କହିଥିଲେ ।

ସାର୍ ବିଶ୍ୱେଶ୍ୱରୟାଙ୍କର ବ୍ୟକ୍ତିଗତ ଡାକ୍ତର ଡଃ ନାଞ୍ଜପା ଯିଏ କି ୪୯ ବର୍ଷ ହେବ ତାଙ୍କର ସ୍ୱାସ୍ଥ୍ୟ ପ୍ରତିଦିନ ପରୀକ୍ଷା କରିଆସୁଥିଲେ କହୁଥିଲେ ଯେ ସାର୍ ବିଶ୍ୱେଶ୍ୱରୟା କେବେ ହେଲେ କୌଣସି ବଡ଼ରୋଗ ଭୋଗି ନାହାନ୍ତି । ସେଥିପାଇଁ ତାଙ୍କର ଶରୀର ଓ ମନ ଦେଶ ସେବାରେ ଏକ ଶତାବ୍ଦୀ ପର୍ଯ୍ୟନ୍ତ ନିୟୋଜିତ ହୋଇପାରିଥିଲା । ତାଙ୍କର ଶରୀର ଅବଶ ହୋଇଆସୁଥିଲା ଏବଂ ପାଣିମୁନ୍ଦେ ପିଇବାକୁ କଷ୍ଟବୋଧ କରୁଥିଲେ । ସେ ତାଙ୍କ ଜୀବନର ଶେଷକାଳରେ ଏକ ଉଇଲ ଲେଖି ଯାଇଥିଲେ ତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା କେଉଁଠାରେ କରିବା ପାଇଁ । ୧୯୬୨ ମସିହା ଏପ୍ରିଲ ୧୨ ତାରିଖ ଦିନ ଏହି ମହାପୁରୁଷଙ୍କର କର୍ମମୟ ଜୀବନର ଅବସାନ ଘଟିଲା । ତାଙ୍କର ବୟସ ସେତେବେଳେ ୧୦୨ ବର୍ଷ ୬ ମାସ ୮ ଦିନ ହୋଇଥିଲା । ତାଙ୍କର ଇଚ୍ଛା ଅନୁସାରେ ତାଙ୍କର ମରଶରୀରକୁ ତାଙ୍କ ଜନ୍ମମାଟି ମୁଦାନହାଲୀକୁ ନେଇ ରାଜକୀୟ ସମ୍ମାନସହ ସତ୍କାର କରାଯାଇଥିଲା । ◻◻◻



**ଇଂ. ନିରାକାର ମହାଳିକ,** F.I.E.

ଜନ୍ମ : ୧୦. ୬.୧୯୪୨

ଯୋବଳା, କେନ୍ଦ୍ରାପଡ଼ା

ଲେଖକ ବୃତ୍ତିରେ ଇଂଜିନିୟର ହେଲେ ମଧ୍ୟ ସାରସ୍ୱତ ସାଧନା ତାଙ୍କର ପ୍ରିୟ ପ୍ରବୃତ୍ତି । ଚାକିରି ଜୀବନରେ ସେ ବହୁସ୍ଥାନ ପରିଭ୍ରମଣର ସୁଯୋଗ ପାଇଛନ୍ତି । ତାହାହିଁ ତାଙ୍କ କୃତି କୀର୍ତ୍ତିର ସାରସ୍ୱତ ଉସ । ଗବେଷଣାର ଦୃଷ୍ଟିଭଙ୍ଗୀ ନେଇ ଯେ ଲେଖିଛନ୍ତି, ଶ୍ରୀ ନୃସିଂହ ନାଥ, ଶ୍ରୀ ହରିଶଙ୍କର, ବେଦବ୍ୟାସ, ରେଢ଼ାଖୋଲ ଇତିହାସ ପ୍ରଭୃତି ତଥ୍ୟମୂଳକ ପୁସ୍ତକ । ତାଙ୍କର ଲୋକପ୍ରିୟ ଜୀବନୀ ଗ୍ରନ୍ଥଗୁଡ଼ିକ ମେଳା, କନ୍ଧକବି ଭୀମଭୋଇ, ମନସ୍ୱୀ ବିକ୍ରମ ଦେବ ବର୍ମ୍ମା । ଗାଳ୍ପିକ ମହାଳିକଙ୍କ ରଚିତ କ୍ଷୁଦ୍ରଗଳ୍ପ ପୁସ୍ତକ ''ମଧ୍ୟାହ୍ନର ସ୍ୱର'' ଏକ ନୂତନ ସ୍ୱାକ୍ଷର ବହନ କରେ ।

ଲେଖକ ଓଡ଼ିଶା ଇଂଜିନିୟରିଂ କଂଗ୍ରେସର ଜଣେ ଆଜୀବନ ସଭ୍ୟ ଏବଂ ଇନ୍‌ଷ୍ଟିଚ୍ୟୁସନ ଅଫ୍ ଇଂଜିନିୟରସ୍‌ର ଫେଲୋ ରୂପେ ମନୋନୀତ ।

ଇଂ. ମହାଳିକ ଓଡ଼ିଶା ସରକାରଙ୍କର ଜଳ ସମ୍ପଦ ବିଭାଗ (କ୍ଷୁଦ୍ର ଜଳ ସେଚନ ସଂସ୍ଥା) ଅଧୀନରେ ସୁନାମ ଓ ଦକ୍ଷତାର ସହ କାର୍ଯ୍ୟକରି ଅବଶେଷରେ କଟକ କ୍ଷୁଦ୍ର ଜଳସେଚନ ଡିଭିଜନର ଏକ୍‌ଜିକ୍ୟୁଟିଭ ଇଂଜିନିୟର ଭାବରେ ଜୁନ, ୨୦୦୦ ମସିହାରେ ଅବସର ଗ୍ରହଣ କରିଅଛନ୍ତି । ଅଧୁନା ନିଜକୁ ସାହିତ୍ୟ ସେବାରେ ନିୟୋଜିତ କରି ଭୁବନେଶ୍ୱରସ୍ଥ ନିଜ ବାସଭବନରେ ସପରିବାର ଅବସ୍ଥାନ କରୁଅଛନ୍ତି ।